ଖାଉଟୀ ମୂଲ୍ୟସୂଚୀ
ନିର୍ଦ୍ଧାରଣରେ ମାରପେଞ୍ଚ

# ଶ୍ରମିକଶ୍ରେଣୀ ପ୍ରତି ବିଶ୍ୱାସଘାତକତା

ସି.ଆଇ.ଟି.ୟୁ.
ଓଡ଼ିଶା ରାଜ୍ୟ କମିଟି

# ପ୍ରକାଶନ ସମ୍ପର୍କରେ

ଅତ୍ୟନ୍ତ ଏକତରଫା ଭାବେ କେନ୍ଦ୍ର ସରକାର ଖାଉଟି ମୂଲ୍ୟସୂଚୀର ମୂଳବର୍ଷକୁ ୧୯୬୦ରୁ ୧୯୮୨କୁ ପରିବର୍ତ୍ତନ କରିଛନ୍ତି । ୧୯୬୦ ବର୍ଷରେ ଥିବା ଭୁଲତୃଟିକୁ ସଂଶୋଧନ ନକରି ଏବଂ ନୂତନ ମୂଲ୍ୟସୂଚୀ ସଂଗ୍ରହ ବେଳେ ସକଳ ପ୍ରକାର ନିୟମ କାନୁନ୍‌କୁ ବେଖାତିର କରି ଓ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନଙ୍କୁ ସଂଶ୍ଲିଷ୍ଟ ନକରି ମନଇଚ୍ଛା ହିସାବ କିତାବ କରିଛନ୍ତି । ଏହି ନୂତନ ମୂଲ୍ୟସୂଚୀ ପ୍ରଚଳିତ ହେଲେ ଶ୍ରମିକ କର୍ମଚାରୀମାନେ ହଜାର ହଜାର କୋଟି ଟଙ୍କା ହରାଇବେ ଏବଂ ସେହି ଅର୍ଥ ଅସାଧୁ ମାଲିକ ଗୋଷ୍ଠୀଙ୍କ ପକେଟ୍‌କୁ ଯିବ । ସେଥିପାଇଁ ସଙ୍ଗଠିତ ଶ୍ରମିକ ଆନ୍ଦୋଳନ ଏହାକୁ ତୀବ୍ର ବିରୋଧ କରୁଛନ୍ତି ।

ଏ ବିଷୟରେ ସବିଶେଷ ତଥ୍ୟ ଜାଣିବା ପାଇଁ ଏହି ପୁସ୍ତିକାଟିକୁ ଛପାଯାଇଛି । ଡଃ ଏମ୍. କେ. ପାଣ୍ଡେ, ସାଧାରଣ ସମ୍ପାଦକ, ସି.ଆଇ.ଟି.ୟୁ.ଙ୍କର **"New Series of Consumer Price Index Numbers (1982=100)"**ପୁସ୍ତିକାଟିର ମୁଖ୍ୟ ଅବଲମ୍ବନରେ ଏହା ଲେଖାଯାଇଛି । ମହାରାଷ୍ଟ୍ର ସି.ଆଇ.ଟି.ୟୁ. ରାଜ୍ୟ କମିଟିର ପୂର୍ବତନ ସମ୍ପାଦକ ସାଥୀ ମଦନ ଫାଡନିସ୍‌ଙ୍କର ପ୍ରବନ୍ଧ **"A Hoax and an act of Treachery against the Indian Working Class"**ଓ ଡଃ ପାଣ୍ଡେଙ୍କର ପୁରୀ କ୍ଲାସ୍ (୧୯୮୧) ଓ ଟେନ୍‌ସା କ୍ଲାସ୍ (୧୯୮୪) ସାହାଯ୍ୟ ମଧ୍ୟ ନିଆଯାଇଅଛି । ଯଥା ସମ୍ଭବ ସରଳ ଭାଷାରେ ସମସ୍ତ ବିଷୟ ଉପସ୍ଥାପନା କରିବା ପାଇଁ ଉଦ୍ୟମ ହୋଇଛି । ଏହାର ପାଣ୍ଡୁଲିପି ପ୍ରସ୍ତୁତି ପାଇଁ ସାଥୀ ଦୁଷ୍ମନ୍ତ ଦାସ ମୁଖ୍ୟତଃ ସମସ୍ତ ଦାୟିତ୍ୱ ନେଇଥିବାରୁ ଧନ୍ୟବାଦାର୍ହ ।

ଶ୍ରମିକମାନଙ୍କ ସ୍ୱାର୍ଥରେ ବିଶେଷତଃ ସଙ୍ଗଠକମାନଙ୍କ ହିତରେ ଏହା ଲାଗିପାରେ ବୋଲି ଆମର ଦୃଢ଼ ବିଶ୍ୱାସ ଏବଂ ଏହାଦ୍ୱାରା ଶ୍ରମିକ କର୍ମଚାରୀମାନେ ମୂଲ୍ୟସୂଚୀ ସଂକ୍ରାନ୍ତରେ ଏକ ସ୍ପଷ୍ଟ ଧାରଣା ନେଇପାରିବେ ।

**ପ୍ରକାଶକ**

# ଖାଉଟୀ ମୂଲ୍ୟସୂଚୀର ମୂଳବର୍ଷ ପରିବର୍ତ୍ତନ କାହିଁକି ଓ କାହା ସ୍ୱାର୍ଥରେ ?

ଖାଉଟି ମୂଲ୍ୟସୂଚୀର ମୂଳବର୍ଷ ୧୯୬୦ (୧୯୬୦ = ୧୦୦)ରୁ ୧୯୮୨ (୧୯୮୨ = ୧୦୦)କୁ କେନ୍ଦ୍ର ସରକାର ଅତ୍ୟନ୍ତ ଏକତରଫା ଭାବେ ପରିବର୍ତ୍ତନ କରିସାରିଛନ୍ତି । ୧୯୬୦ ବର୍ଷରେ ଥିବା ଭୁଲତୃଟିକୁ ସଂଶୋଧନ ନକରି ଏବଂ ନୂତନ ମୂଲ୍ୟସୂଚୀ ନିର୍ଦ୍ଧାରଣ ବେଳେ ମାଲିକ ସପକ୍ଷବାଦୀ ନୀତି ଗ୍ରହଣ ଓ ଟ୍ରେଡ୍‌ମାନଙ୍କୁ ଉପେକ୍ଷା କରିବା ଫଳରେ ଏହି ନୂତନ ମୂଲ୍ୟସୂଚୀ ନିର୍ଦ୍ଧାରଣ ଯୋଗୁଁ ଶ୍ରମିକମାନେ ବିଶେଷଭାବେ କ୍ଷତିଗ୍ରସ୍ତ ହେଉଛନ୍ତି ।

ଖାଉଟୀ ମୂଲ୍ୟସୂଚୀର ମୂଳବର୍ଷ ପରିବର୍ତ୍ତନ ପାଇଁ ସରକାରଙ୍କର ନିଷ୍ପତ୍ତିକୁ ଆମ ଦେଶ ସମ୍ମୁଖୀନ ହୋଇଥିବା ଗୁରୁତର ଅର୍ଥନୈତିକ ସଙ୍କଟଜନକ ପରିସ୍ଥିତି ଠାରୁ ବିଚ୍ଛିନ୍ନ କରି ବିଚାର କରିବା ଉଚିତ୍ ନୁହେଁ । ଦେଶର ଶିଳ୍ପଜାତ ଦ୍ରବ୍ୟ ଉତ୍ପାଦନ କ୍ଷେତ୍ରରେ ମନ୍ଦି ଅବସ୍ଥା ଦେଖାଦେଇଛି । ଲେ-ଅଫ୍, ଲକ୍‌ଆଉଟ୍, କ୍ଲୋଜର ସଂଖ୍ୟାବୃଦ୍ଧି ପାଇଛି । ରେଜେଷ୍ଟ୍ରଭୁକ୍ତ ବେକାରମାନଙ୍କ ସଂଖ୍ୟା ୪ କୋଟିରୁ ଅଧିକ ହେଲାଣି । ଗ୍ରାମାଞ୍ଚଳରେ ରହୁଥିବା ବେକାରମାନଙ୍କ ସଂଖ୍ୟା ନିର୍ଦ୍ଧାରଣ ପାଇଁ ଯଦି ୨ୟ ପଞ୍ଚବାର୍ଷିକ ଯୋଜନାର ଅନୁସୃତ ନୀତିକୁ ଗ୍ରହଣ କରାଯାଏ ତେବେ ସେମାନଙ୍କ ସଂଖ୍ୟା ୧୬ କୋଟିରୁ ଅଧିକ ହେବ । ଘାଟତି ବଜେଟ୍, ଅତ୍ୟଧିକ ମୂଲ୍ୟବୃଦ୍ଧି ଏବଂ ମୁଦ୍ରାସ୍ଫିତି ଆମ ଦେଶର ଅର୍ଥନୀତିକୁ ଅଧିକ ସଙ୍କଟଗ୍ରସ୍ତ କରାଉଛି । ଏହା ସାଙ୍ଗକୁ ଏହି ସଙ୍କଟରୁ ଉଦ୍ଧାର ପାଇବା ଆଶାରେ ସାମ୍ରାଜ୍ୟବାଦୀ ରାଷ୍ଟ୍ରଙ୍କ ଦ୍ୱାରା ପରିଚାଳିତ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି, ବିଶ୍ୱ ବାଣିଜ୍ୟ ସଙ୍ଗଠନ ତଥା ବହୁରାଷ୍ଟ୍ରୀୟ କର୍ପୋରେସନ୍ ଆଦି ସଂସ୍ଥାମାନଙ୍କ ନିକଟରେ ଋଣ ପାଇବା ପାଇଁ ଦ୍ୱାରସ୍ଥ ହେବା ଏବଂ ସେଥିପାଇଁ ଆମ ଦେଶର ଅର୍ଥନୀତି ଉପରେ ସେମାନଙ୍କ କର୍ତ୍ତୃତ୍ୱ ଜାହିର ଆଦି ଅସମ୍ମାନ ଏବଂ ଭୟଙ୍କର ସର୍ତ୍ତ ଗୁଡ଼ିକୁ ଗ୍ରହଣ କରିନେବା ଫଳରେ ଦେଶର ଆତ୍ମନିର୍ଭରଶୀଳ ନୀତିକୁ ବସ୍ତୁତଃ ଜଳାଞ୍ଜଳୀ ଦିଆଯାଇଛି ଓ ଦେଶର ଆର୍ଥିକ ଅବସ୍ଥା ଆହୁରି ଅଧିକ ଶୋଚନୀୟ ହୋଇଛି । ଜନଗଣଙ୍କର ଜୀବନଧାରଣମାନ ହ୍ରାସ ପାଉଥିବା ଦୃଷ୍ଟିରୁ ଆଭ୍ୟନ୍ତରୀଣ ବଜାର ସଙ୍କୁଚିତ ହେଉଛି । ଏହା ଫଳରେ ପୁଞ୍ଜିପତିଙ୍କର ମୁନାଫା ଉପରେ ଆଞ୍ଚ ଆସୁଛି । ଅନ୍ୟ ଦିଗରେ ଅନ୍ୟ ଦେଶକୁ ଉତ୍ପାଦନ ଖର୍ଚ୍ଚ କମ୍‌କରି ରପ୍ତାନୀ ମାଧ୍ୟମରେ ଦେଶର ଶିଳ୍ପ ଉତ୍ପାଦନ ବୃଦ୍ଧି କରିବା ପାଇଁ ବିଶ୍ୱବ୍ୟାଙ୍କ, ମୁଦ୍ରାପାଣ୍ଠିର ପ୍ରେସ୍‌କ୍ରିପ୍‌ସ୍‌ରେ କୁହାଯାଇଛି । ନୂତନ ଆର୍ଥିକ ନୀତି ନାମରେ ଆମଦାନୀ କଟକଣା ହ୍ରାସ, ଅନାବଶ୍ୟକ ହୋଇ ମଧ୍ୟ ବହୁ ଦ୍ରବ୍ୟର ଅବାଧ ଆମଦାନୀ, ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଘରୋଇକରଣ,

ଶ୍ରମିକ ସଙ୍କୋଚନ ନୀତି ଗ୍ରହଣ କରାଯାଇଛି । ଏଥି ସହିତ ମୌଳିକ ଭାବରେ ପୁଞ୍ଜିପତି ଶ୍ରେଣୀ ସଙ୍କଟଜନକ ଆର୍ଥିକ ପରିସ୍ଥିତିରେ ନିଜର ମୁନାଫାର ପରିମାଣ ବଜାୟ ରଖିବା ଅଥବା ବଢ଼ାଇବା ପାଇଁ ଶ୍ରମିକ ଶ୍ରେଣୀ ପାଉଥିବା ଅଂଶ ଉପରେ ଆକ୍ରମଣ କରିବାକୁ ଚାହେଁ । ବର୍ତ୍ତମାନ ପରିସ୍ଥିତିରେ ମହଙ୍ଗା ଭତ୍ତା ଶ୍ରମିକ ଶ୍ରେଣୀ ପାଉଥିବା ଆୟର ଏକ ବିରାଟ ଅଂଶ । ସଙ୍ଗଠିତ ଶ୍ରମିକଶ୍ରେଣୀର ମହଙ୍ଗାଭତ୍ତା ମୂଲ୍ୟସୂଚୀ ସହ ଜଡ଼ିତ । ତେଣୁ ମୂଲ୍ୟସୂଚୀ ନିର୍ଦ୍ଧାରଣ ଉପରେ ଆକ୍ରମଣ ଆରମ୍ଭ ହୋଇଛି । ଅବଶ୍ୟ ଏକଥା ସମସ୍ତେ ହୃଦୟଙ୍ଗମ କରୁଥିବେ ଯେ ମାଲିକ ପୁଞ୍ଜିପତି ଶ୍ରେଣୀ ଶ୍ରମିକମାନଙ୍କୁ ଦରବୃଦ୍ଧି ଦୃଷ୍ଟିରୁ ବୃଦ୍ଧି ପାଉଥିବା ମୂଲ୍ୟସୂଚୀର ସମ୍ପୂର୍ଣ୍ଣ ଭରଣା ମହଙ୍ଗା ଭତ୍ତା ଆକାରରେ ଦେଉନାହିଁ । ଏହାଛଡ଼ା ବହୁ ଶିଳ୍ପରେ ମୂଲ୍ୟସୂଚୀ ସହ ମହଙ୍ଗାଭତ୍ତା ପରିମାଣ ସଠିକ୍ ଭାବେ ନିର୍ଦ୍ଧାରିତ ହୋଇ ନଥିବାରୁ ଦରଦାମ ବୃଦ୍ଧି ସହିତ ଶ୍ରମିକମାନଙ୍କର ଆୟ କମି କମି ଯାଉଛି, ଅର୍ଥାତ୍ ଜୀବନଧାରଣ ମାନ ହ୍ରାସ ପାଉଛି । ଶ୍ରମଜୀବୀ ଜନଗଣଙ୍କ ଉପରେ ଏହି ଶୋଷଣର ଭାର ଆହୁରି ତୀବ୍ର କରିବା ପାଇଁ ମାଲିକ ପୁଞ୍ଜିପତିମାନଙ୍କ ପକ୍ଷରୁ ସରକାରଙ୍କ ଉପରେ ବାରମ୍ବାର ଚାପ ପ୍ରୟୋଗ କରାଯାଇଛି ଏବଂ ସେହି ଦୃଷ୍ଟିରୁ ଖାଉଟୀ ମୂଲ୍ୟସୂଚୀର ମୂଳବର୍ଷ ସରକାର ବାରମ୍ବାର ପରିବର୍ତ୍ତନ କରିଛନ୍ତି । ଏବର ପରିବର୍ତ୍ତନ ପାଇଁ ନିଷ୍ପତ୍ତି ଏହି ଶୋଷଣର ଏକ ଅଂଶବିଶେଷ ମାତ୍ର ।

## ମୂଲ୍ୟସୂଚୀ ବୃଦ୍ଧି ଜନିତ କ୍ଷତି ଭରଣା ପାଇଁ ମହଙ୍ଗାଭତ୍ତା ଏହାର ଐତିହାସିକ ପୃଷ୍ଠଭୂମି

ମୂଲ୍ୟସୂଚୀ ବୃଦ୍ଧି ଦୃଷ୍ଟିରୁ ବାସ୍ତବ ଆୟର ଯେଉଁ ହ୍ରାସ ଘଟୁଛି ତାହାର ସମ୍ୟକ୍ ଭରଣା ପାଇଁ ବର୍ତ୍ତମାନ ଯେଉଁ ମହଙ୍ଗାଭତ୍ତା ମିଳୁଛି ତାହା ଶ୍ରମିକମାନଙ୍କୁ ମାଲିକ ଗୋଷ୍ଠୀ ଏବଂ ସରକାର ଦୟାପରବଶ ହୋଇ ଦେଇ ନାହାନ୍ତି । ଏଥିପାଇଁ ଶ୍ରମିକ ଶ୍ରେଣୀକୁ ରକ୍ତକ୍ଷୟୀ ସଂଗ୍ରାମ ମଧ୍ୟଦେଇ ଆଗେଇବାକୁ ପଡ଼ିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବାର ଠିକ୍ ପରେ ପରେ ଜିନିଷପତ୍ରର ମୂଲ୍ୟ ହୁ ହୁ କରି ବଢ଼ିବାକୁ ଆରମ୍ଭ କଲା । ଯୁଦ୍ଧ ମୁଖ୍ୟତଃ ୟୁରୋପରେ ହେଉଥିଲେ ବି ବ୍ରିଟେନ୍‌ର ତତ୍କାଳିନ ଏକ ଉପନିବେଶ ଭାବେ ଆମ ଦେଶରେ ତାହାର କୁପ୍ରଭାବ ପଡ଼ିଲା । ବାସ୍ତବ ଆୟର ସୁରକ୍ଷା ପାଇଁ ମହଙ୍ଗା ଭତ୍ତା ଦାବିରେ ୧୯୪୦ ମସିହା ମାର୍ଚ୍ଚ ୫ ତାରିଖରେ ବମ୍ବେର ୧,୭୫,୦୦୦ ଲୁଗାକଳ ଶ୍ରମିକ ସାଧାରଣ ଧର୍ମଘଟ ଆରମ୍ଭ କଲେ । ସେମାନଙ୍କ ଦାବିର ସମର୍ଥନରେ ଆହୁରି ୩ ଲକ୍ଷ ବମ୍ବେ ଶ୍ରମିକ ମାର୍ଚ୍ଚ ୧୦ ତାରିଖରେ ଦିନିକିଆ ଧର୍ମଘଟ କଲେ । ପରବର୍ତ୍ତୀ ଅବସ୍ଥାରେ କଲିକତା ଚଟକଳ ଶ୍ରମିକ, କଲିକତା କର୍ପୋରେସନ୍‌ର କର୍ମଚାରୀ ମହଙ୍ଗା ଭତ୍ତା ଦାବିରେ ଧର୍ମଘଟ କରିଥିଲେ । ଧର୍ମଘଟ ପରେ ପରେ ବମ୍ବେ (ପାର୍ଲେ ଓ ମହାଲକ୍ଷ୍ମୀ ୱାର୍କସପ୍)ର ରେଳ ଶ୍ରମିକମାନେ ମଧ୍ୟ ଧର୍ମଘଟ

କଲେ । ଏହି ସମସ୍ତ ଆନ୍ଦୋଳନ ଫଳରେ ରେଳବାଇ ଶ୍ରମିକଙ୍କୁ ମହଙ୍ଗା ଭତ୍ତା ଦେବାପାଇଁ ତତ୍କାଳିନ ସରକାର "Rau Court of Enquiry" ଗଠନ କଲେ । ଏହି କମିଟି ମାସିକ ମାତ୍ର ୩ ଟଙ୍କା ଲେଖାଏଁ ମହଙ୍ଗା ଭତ୍ତା ଦେବାପାଇଁ ସୁପାରିଶ କରିଥିଲେ । ଏହା ପରଠାରୁ ବହୁ ସ୍ଥାନରେ ଶ୍ରମିକମାନେ ମହଙ୍ଗା ଭତ୍ତା ଦାବିରେ ଧର୍ମଘଟ ଓ ଅନ୍ୟାନ୍ୟ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଗ୍ରହଣ କରିଆସିଛନ୍ତି । ଏହାଫଳରେ ମହଙ୍ଗା ଭତ୍ତା ଦେବାପାଇଁ ସରକାର ବିଭିନ୍ନ ସମୟରେ ମୂଲ୍ୟସୂଚୀର ମୂଳବର୍ଷ ନିର୍ଦ୍ଧାରଣ କରିଛନ୍ତି । ୧୯୩୯, ୧୯୪୪, ୧୯୪୯, ୧୯୬୦ ଏହିଭଳି ଭାବେ ମୂଲ୍ୟସୂଚୀର ମୂଳବର୍ଷ ହୋଇଛି ।

## ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଗଫଲ୍‌ତି

ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଗଫଲ୍‌ତି ରହିଥିବାରୁ ଜିନିଷପତ୍ରର ପ୍ରକୃତ ମୂଲ୍ୟ ବୃଦ୍ଧି ମୂଲ୍ୟସୂଚୀରେ ପ୍ରତିଫଳିତ ହେଉନାହିଁ । ତେଣୁ ଏହା ବିରୁଦ୍ଧରେ ଆମେ ଦେଶର ଟ୍ରେଡ୍ ୟୁନିୟନ୍‌ମାନେ ଆନ୍ଦୋଳନ କରିଛନ୍ତି । ବହୁ ସମୟରେ ଟ୍ରେଡ୍ ୟୁନିୟନ୍‌ମାନେ ଦର୍ଶାଇଛନ୍ତି ଯେ ମୂଲ୍ୟସୂଚୀର ହ୍ରାସ ଘଟୁଛି ବୋଲି ସରକାରୀ ହିସାବ କହୁଥିବା ବେଳେ - ଜିନିଷପତ୍ରର ଦରଦାମ ବଢୁଛି ବୋଲି ଶ୍ରମିକ (ଖାଉଟୀ)ମାନଙ୍କ ନିଜସ୍ୱ ଅଭିଜ୍ଞତା ଦର୍ଶାଉଛି । ଶ୍ରମିକମାନେ ମୂଲ୍ୟସୂଚୀ ସମ୍ପର୍କରେ କିଛି ଜାଣିନାହାନ୍ତି ବୋଲି କହି ସରକାର ସେମାନଙ୍କ ଆନ୍ଦୋଳନକୁ ଏଡ଼ାଇ ଦେଇଥାନ୍ତି । ଲେବର ବ୍ୟୁରୋର କର୍ମକର୍ତ୍ତାମାନେ ଶ୍ରମିକମାନଙ୍କ ବାସ୍ତବଧର୍ମୀ ମତାମତକୁ ଗ୍ରହଣ ନକରି କିଭଳି ତଥାକଥିତ ବୈଜ୍ଞାନିକ ପଦ୍ଧତିରେ ମୂଲ୍ୟସୂଚୀ ନିର୍ଦ୍ଧାରିତ ହେଉଛି ତାହା ଦର୍ଶାଇବାକୁ ଚେଷ୍ଟା କରିଥାଆନ୍ତି ।

ସରକାରଙ୍କର ସମ୍ପୃକ୍ତ ସଂସ୍ଥା ଯେ ତ୍ରୁଟିପୂର୍ଣ୍ଣଭାବେ ମୂଲ୍ୟସୂଚୀ ନିର୍ଦ୍ଧାରଣ କରୁଛନ୍ତି ତାହା ବାରମ୍ବାର ପ୍ରମାଣିତ ହୋଇଛି । ୧୯୩୯ ମସିହା ମୂଲ୍ୟସୂଚୀ କ୍ଷେତ୍ରରେ ମହାରାଷ୍ଟ୍ର, ଉତ୍ତର ପ୍ରଦେଶ, ଗୁଜୁରାଟ ଆଦି ରାଜ୍ୟରେ ଏବଂ କେନ୍ଦ୍ରଶାସିତ ଅଞ୍ଚଳ ଦିଲ୍ଲୀରେ ଗଫଲତି ରହିଥିଲା ବୋଲି ପ୍ରମାଣିତ ହୋଇସାରିଛି । ବମ୍ବେ ବନ୍ଦ ପାଇଁ ଆହ୍ୱାନ ଦେବାପରେ ହିଁ ମହାରାଷ୍ଟ୍ର ସରକାର ମୂଲ୍ୟସୂଚୀରେ ତ୍ରୁଟି ରହିଛି କି ନାହିଁ ତାହା ନିର୍ଦ୍ଧାରଣ କରିବାକୁ ଲକଡ଼ୱାଲା କମିଟି ଗଠନ କରିଥିଲେ । ବମ୍ବେର ମୂଲ୍ୟସୂଚୀ ନିର୍ଦ୍ଧାରଣରେ ୨୧ ପଏଣ୍ଟ କମ୍ ଦର୍ଶାଯାଇଛି ବୋଲି ଏହି କମିଟି ରିପୋର୍ଟ ଦେଇଥିଲେ । ଏହାପରେ ଅହମଦାବାଦ କେନ୍ଦ୍ର ପାଇଁ ଗଠିତ ଦେଶାଇ କମିଟି ମୂଲ୍ୟସୂଚୀ ତ୍ରୁଟିପୂର୍ଣ୍ଣ ବୋଲି ମତଦେଲେ । ଦିଲ୍ଲୀ କ୍ଷେତ୍ରରେ ମଧ୍ୟ ଠିକ୍ ସେଇଆ ହେଲା । ଯେଉଁ ଯେଉଁ କେନ୍ଦ୍ରରେ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନ ଅପେକ୍ଷାକୃତ ଶକ୍ତିଶାଳୀ ଥିଲା ସେଠାରେ ମୂଲ୍ୟସୂଚୀରେ ଥିବା ତ୍ରୁଟି ନିର୍ଦ୍ଧାରଣ ପାଇଁ

ଶ୍ରମିକଶ୍ରେଣୀ ସରକାରଙ୍କୁ ବାଧ କରିପାରିଥିଲା ଏବଂ ଏହାଫଳରେ କିଛି ରିଲିଫ୍ ପାଇବା ସମ୍ଭବ ହେଲା । କିନ୍ତୁ ବହୁ କେନ୍ଦ୍ରରେ ଶ୍ରମିକ ଆନ୍ଦୋଳନ ଦୁର୍ବଳତା ଯୋଗୁଁ ବହୁ ଅଧିକ ଶ୍ରମିକ ଶୋଷଣର ଶୀକାର ହୋଇ ରହିଲେ ।

## ମୂଲ୍ୟସୂଚୀ ପ୍ରତି ଶ୍ରମିକଶ୍ରେଣୀର ବର୍ଦ୍ଧିଷ୍ଣୁ ଅବିଶ୍ୱାସଭାବ

ଜିନିଷପତ୍ରର ମୂଲ୍ୟବୃଦ୍ଧି ଘଟୁଥିବା ବେଳେ ମୂଲ୍ୟସୂଚୀରେ ତାହା ପ୍ରତିଫଳିତ ହେଉନଥିବାରୁ ମୂଲ୍ୟସୂଚୀ ପ୍ରତି ଅବିଶ୍ୱାସଭାବ ବୃଦ୍ଧି ପାଇବା ସ୍ୱାଭାବିକ । ଉଦାହରଣ ସ୍ୱରୂପ ବିବିଧ ଗ୍ରୁପରେ **(Miscellaneous Group)** ବିଭିନ୍ନ ଜିନିଷପତ୍ରର ମୂଲ୍ୟ ବଢୁଥିବା ବେଳେ ୧୯୪୪ ମସିହାକୁ ମୂଳବର୍ଷ ଭାବେ ଧରି କଲିକତା ସହରରେ ନିର୍ଦ୍ଧାରିତ ହେଉଥିବା ମୂଲ୍ୟସୂଚୀ ବହୁଦିନ ଧରି ଆଦୌ ବୃଦ୍ଧି ହେଉନଥିଲା । ଖାଣ୍ଟି ଗୁଆଘିଅ ବଦଳରେ ବନସ୍ପତି ମୂଲ୍ୟକୁ ହିସାବକୁ ନିଆଗଲା । ବାସଗୃହର ମୂଲ୍ୟସୂଚୀ ପ୍ରାୟ ୧୦ ବର୍ଷ ଧରି ଆଦୌ ବୃଦ୍ଧି କରାଗଲା ନାହିଁ । ଏପରିକି ସପ୍ତମ ଦଶକର ଆରମ୍ଭରେ ଗୋଟିଏ ମଧ୍ୟମ କିସମର ଦୁଇଟି ଶାଢ଼ୀର ମୂଲ୍ୟ ୮ ଟଙ୍କା ୫୦ ପଇସା ବୋଲି ଦର୍ଶାଯାଉଥିଲା । ଏହାଫଳରେ ମୂଲ୍ୟସୂଚୀର ସଠିକତା ସମ୍ପର୍କରେ ସତ୍ୟାସତ୍ୟ ଜାଣିବା ପାଇଁ ପଶ୍ଚିମବଙ୍ଗର କଂଗ୍ରେସ ସରକାର ଏକ କମିଟି ବସାଇବାକୁ ବାଧ ହୋଇଥିଲେ । କିନ୍ତୁ ମୂଲ୍ୟସୂଚୀ ନିର୍ଦ୍ଧାରଣ ସମ୍ପର୍କରେ ଟ୍ରେଡ୍ ୟୁନିୟନ୍‌ମାନେ କୌଣସି ତଥ୍ୟ ସରକାରଙ୍କଠାରୁ ଜାଣିବାକୁ ମାଗିଲେ ତାହା ଯୋଗାଇ ଦିଆଯାଇ ନଥିଲା । ଏପରିକି କଲିକତା ସହରର ମୂଲ୍ୟସୂଚୀ ନିର୍ଦ୍ଧାରଣର ସଠିକତା ସମ୍ପର୍କରେ କମିଟି ଗଠନ କରାଯାଇଥିବା ବେଳେ ସି.ଆଇ.ଟି.ୟୁ.ର ପଶ୍ଚିମବଙ୍ଗ ଶାଖା କମିଟି କଂଗ୍ରେସ ଶାସନାଧୀନ ରାଜ୍ୟ ସରକାରଙ୍କ ଠାରୁ ବିଭିନ୍ନ ଜିନିଷର ମୂଲ୍ୟ ସଂଗ୍ରହ ପାଇଁ ଏକ ନିର୍ଦ୍ଧାରିତ ସିଡ୍ୟୁଲ **(Schedule)** ପାଇପାରିଲେ ନାହିଁ । ବହୁ ସମୟରେ ଶ୍ରମ ଦପ୍ତରକୁ ଲେଖାଯାଉଥିବା ଚିଠିର ଆଦୌ ଉତ୍ତର ଆସେନାହିଁ । ଏ ସମସ୍ତ ଫଳରେ ମୂଲ୍ୟସୂଚୀ ନିର୍ଦ୍ଧାରଣ ପ୍ରତି ଶ୍ରମିକମାନଙ୍କ ଅବିଶ୍ୱାସ ଭାବ ଅଧିକ ବୃଦ୍ଧି ପାଇବା ସ୍ୱାଭାବିକ ।

## ଜରୁରୀକାଳୀନ ପରିସ୍ଥିତିର କୁପ୍ରଭାବ

ଜରୁରୀକାଳୀନ ପରିସ୍ଥିତିରେ ଏକଛତ୍ରବାଦୀ ଆକ୍ରମଣର ଶୀକାରରୁ ମୂଲ୍ୟସୂଚୀ ବାଦ ପଡ଼ିନଥିଲା । ଦରଦାମ ହ୍ରାସ କରିବାକୁ ସରକାରଙ୍କ ଘୋଷଣାନାମା ବାସ୍ତବ କ୍ଷେତ୍ରରେ ପ୍ରତିଫଳିତ ନହେବା ପରେ ଜିନିଷପତ୍ରର ମୂଲ୍ୟ ହ୍ରାସ ନଘଟିଲେ ବି ମୂଲ୍ୟସୂଚୀ କ୍ରମାଗତ ଭାବେ ହ୍ରାସ କରାଗଲା । ବିଭିନ୍ନ ଦୋକାନ୍ ସାମନାରେ ଜିନିଷପତ୍ର ଦାମର ଯେଉଁ ମୂଲ୍ୟ

ତାଲିକା ଝୁଲାଯାଉଥିଲା ତାହା କେବଳ ସରକାରୀ ତଦାରଖକାରୀମାନଙ୍କ ପାଇଁ ଏବଂ ପ୍ରଚାର ଉଦ୍ଦିଷ୍ଟ ଥିଲା । ଉଲ୍ଲେଖଥିବା ଦର ଅନୁଯାୟୀ କୌଣସି ଜିନିଷ ଖାଉଟୀମାନେ କିଣିବାକୁ ପାଉନଥିଲେ । ଏହା ଫଳରେ ଶ୍ରମିକମାନେ କେତେକ ଶିଳ୍ପରେ ମାସିକ ୪୦ ଟଙ୍କା ପର୍ଯ୍ୟନ୍ତ ମହଙ୍ଗାଭତ୍ତା ହରାଇଥିଲେ । ଏହା ବିରୁଦ୍ଧରେ ସି.ଆଇ.ଟି.ୟୁ. ଏବଂ ଆଉ କେତେକ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍‌ମାନେ ସ୍ୱର ଉତ୍ତୋଳନ କରିଥିଲେ ମଧ୍ୟ ତାହା କେହି କର୍ଣ୍ଣପାତ କରିନଥିଲେ । ମାଲିକଗୋଷ୍ଠୀ ସରକାରୀ ଦପ୍ତର ଏବଂ ସରକାର ସମସ୍ତେ ଏକଜୁଟ ହୋଇ ଶ୍ରମିକମାନଙ୍କ ବିରୁଦ୍ଧରେ ସେମାନଙ୍କର ଆକ୍ରମଣର ଖଡ୍‌ଗ ଉତ୍ତୋଳନ କରିଥିଲେ । ପଶ୍ଚିମବଙ୍ଗର ତତ୍କାଳୀନ କଂଗ୍ରେସ ସରକାର ବିଶେଷଜ୍ଞ କମିଟିର ସୁପାରିଶକୁ ବେଖାତିର କରି ଶ୍ରମିକମାନଙ୍କୁ ମାସିକ୍ ୬୪ ଟଙ୍କା ପରିବର୍ତ୍ତେ ୧୬ ଟଙ୍କା ଦେବାପାଇଁ ନିଷ୍ପତ୍ତିକରି ତାକୁ କାର୍ଯ୍ୟକାରୀ କରିବା ପାଇଁ ଡି.ଆଇ.ଆର. ଜରିଆରେ ବିଜ୍ଞପ୍ତି ଜାରିକଲେ । ଠିକ୍ ସେହିପରି ଦିଲ୍ଲୀ ନଗରୀ ପାଇଁ ମୂଲ୍ୟସୂଚୀରେ କେତେକ ପରିବର୍ତ୍ତନ ପାଇଁ ନିଯୁକ୍ତ ବିଶେଷଜ୍ଞ କମିଟି ସୁପାରିଶ କଲେ । କିନ୍ତୁ ସରକାର ଆଉ ଏକ ତଥାକଥିତ କାରିଗରୀ ପରାମର୍ଶଦାତା କମିଟି ସୁପାରିଶ ନାଁରେ ବିଶେଷଜ୍ଞ କମିଟିର ସୁପାରିଶକୁ ବାତିଲ କରିଦେଲେ । ଏହା ଫଳରେ ମୂଲ୍ୟସୂଚୀ ନିର୍ଦ୍ଧାରଣ ପ୍ରତି ଶ୍ରମିକମାନଙ୍କ ଅସନ୍ତୋଷ ବୃଦ୍ଧି ପାଇବା ସ୍ୱାଭାବିକ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୬୦ ମସିହା ମୂଲ୍ୟସୂଚୀ ଅନୁଯାୟୀ ଯଦି ୧ ପଏଣ୍ଟ କମ୍‌ହେବ ତେବେ କେବଳ ରାଷ୍ଟ୍ରାୟତ୍ତ ସଂସ୍ଥାର ଶ୍ରମିକମାନେ ବର୍ଷକୁ ୪ କୋଟି ଟଙ୍କା ହରାଇବେ । ସେହି ୧ ପଏଣ୍ଟ ମୂଲ୍ୟସୂଚୀ କମହେଲେ ଦେଶର ମାଲିକ ଗୋଷ୍ଠୀ ୨୦ କୋଟି ଟଙ୍କାରୁ ଅଧିକ ଟଙ୍କା ଶ୍ରମିକମାନଙ୍କ ମଜୁରୀରୁ ଠକିନେଇ ଆପଣାର ମୁନାଫା ବଢ଼ାଇବେ । ତେଣୁ ମୂଲ୍ୟସୂଚୀ ଜନିତ ତ୍ରୁଟିର କ୍ଷତି ଶ୍ରମିକଶ୍ରେଣୀ ପାଇଁ ଯେ କେତେ ଅଧିକ ତାହା ଅନୁମେୟ ।

## ନୀଳକଣ୍ଠ ରଥ କମିଟିଙ୍କ ସୁପାରିଶ

ମୂଲ୍ୟସୂଚୀ ନିର୍ଦ୍ଧାରଣର ବିଭିନ୍ନ ଦିଗ ସମ୍ପର୍କରେ ଅନୁଧ୍ୟାନ କରି ତାହାର ସଂଶୋଧନ କରିବା ପାଇଁ ସି.ଆଇ.ଟି.ୟୁ. ଏବଂ ଅନ୍ୟାନ୍ୟ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍‌ମାନେ ୧୯୭୭ ମସିହାରେ କେନ୍ଦ୍ର ଶ୍ରମମନ୍ତ୍ରୀ ରବୀନ୍ଦ୍ର ବର୍ମାଙ୍କ ଦ୍ୱାରା ଆହୂତ ବୈଠକରେ ଦାବି କରିଥିଲେ । ତଦନୁଯାୟୀ କେନ୍ଦ୍ର ସରକାର ବିଶିଷ୍ଟଅର୍ଥନୀତିଜ୍ଞ ଡଃ ନୀଳକଣ୍ଠ ରଥଙ୍କ ଅଧ୍ୟକ୍ଷତାରେ ଏକ ତ୍ରିପାକ୍ଷିକ କମିଟି ଗଠନ କଲେ । ଯେଉଁ ସମସ୍ତ ବିଷୟ ଉପରୋକ୍ତ କମିଟିର ବିଚାର ଆଲୋଚନା କରି ସୁପାରିଶ କରିବେ ବୋଲି କୁହାଗଲା ତା' ହେଲା :

୧. ମୂଲ୍ୟସୂଚୀ ନିର୍ଦ୍ଧାରଣର ବିଭିନ୍ନ ଦିଗ, ପଦ୍ଧତି ଏବଂ ଏ କ୍ଷେତ୍ରରେ ଅନୁଧ୍ୟାନକୁ ନିଆଯାଉଥିବା ବିଭିନ୍ନ ଜିନିଷର ଗୁରୁତ୍ୱ ବା ପ୍ରାଧାନ୍ୟ **(Weightage)**, ସଂଯୋଗକାରୀ ଅଂଶ ଏବଂ ମୂଲ୍ୟ ସଂଗ୍ରହ ବ୍ୟବସ୍ଥାର ସମୀକ୍ଷା,

୨. ପ୍ରଚଳିତ ମୂଲ୍ୟ ସଂଗ୍ରହ ପଦ୍ଧତି ଏବଂ ସେଥିପାଇଁ ରହିଥିବା ବ୍ୟବସ୍ଥା ତଥା ମୂଲ୍ୟ ସଂଗ୍ରହ କାର୍ଯ୍ୟ ସହ ଟ୍ରେଡ୍ ୟୁନିୟନ୍ ଏବଂ ନିଯୁକ୍ତିଦାତାମାନଙ୍କ ପ୍ରତିନିଧିମାନଙ୍କୁ ସଂଶ୍ଳିଷ୍ଟ କରିବା ପ୍ରଶ୍ନ ଉପରେ ବିଚାର ଆଲୋଚନା କରି ରିପୋର୍ଟଦେବା ଏବଂ

୩. ଉପରୋକ୍ତ ବିଷୟବସ୍ତୁ ଉପରେ ସୁପାରିଶ କରିବା ।

କମିଟି ଏ ସମ୍ପର୍କରେ ସମୀକ୍ଷା କରି ଯେଉଁ ସମସ୍ତ ସର୍ବସମ୍ମତ ସିଦ୍ଧାନ୍ତରେ ଉପନୀତ ହେଲେ ସେଗୁଡ଼ିକ ହେଲା :-

୧୯୭୭ ମସିହା ଅଗଷ୍ଟ ମାସର ମୂଲ୍ୟସୂଚୀ ୩୨୭ ପଏଣ୍ଟ ପରିବର୍ତ୍ତେ ୩୩୪ ପଏଣ୍ଟ ହେବାକଥା । ମୂଲ୍ୟସୂଚୀ ନିର୍ଦ୍ଧାରଣର ପ୍ରସ୍ତୁତି ଏବଂ ନିର୍ଣ୍ଣୟର ପ୍ରତ୍ୟେକ କ୍ଷେତ୍ରରେ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନଙ୍କୁ ସଂଶ୍ଳିଷ୍ଟ କରିବାର ଆବଶ୍ୟକତା ରହିଛି । ସର୍ବଭାରତୀୟ ସ୍ତରରେ ଟ୍ରେଡ୍ ୟୁନିୟନ୍ ଏବଂ ମାଲିକମାନଙ୍କ ସଙ୍ଗଠନର ପ୍ରତିନିଧି, ବୈଷୟିକ ପରାମର୍ଶଦାତା କମିଟିଚେୟାରମ୍ୟାନ୍ ଏବଂ ଲେବର ବ୍ୟୁରୋର ନିର୍ଦ୍ଦେଶକଙ୍କୁ ନେଇ ଏକ ଷ୍ଟାଣ୍ଡିଂ ଆଡଭାଇଜୋରୀ କମିଟି ଗଠିତ ହେବା ଦରକାର । ଏହା ସରକାରଙ୍କ ବଡ଼ ବଡ଼ ସମସ୍ୟା ଉପରେ ପରାମର୍ଶ ଦେବ ଏବଂ ମୂଲ୍ୟସୂଚୀ ସଂକ୍ରାନ୍ତରେ ପରାମର୍ଶ ପାଇଁ ଏକ ସ୍ଥାୟୀ ସଂସ୍ଥାରୂପେ କାର୍ଯ୍ୟ କରିବ । ରାଜ୍ୟସ୍ତରରେ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନଙ୍କୁ ସଂଶ୍ଳିଷ୍ଟ କରି ସେହିଭଳି ଏକ ଷ୍ଟାଣ୍ଡିଂ କମିଟି ଗଠନ କରିବା ଦରକାର । ଏହି କମିଟି ମାସକୁ ଥରେ ଲେଖାଏଁ ବସି ସଂଗୃହୀତ ହୋଇଥିବା ବିଭିନ୍ନ ତଥ୍ୟ ସଂକ୍ରାନ୍ତରେ ସମୀକ୍ଷା କରିବା ଉଚିତ । ଏପରିକି ମୂଲ୍ୟ ସଂଗ୍ରହ ବ୍ୟବସ୍ଥା ସହ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନଙ୍କୁ ଦର୍ଶକଭାବେ ସାମିଲ କରିବା ପାଇଁ କମିଟି ସୁପାରିଶ କରିଥିଲା । ଯେଉଁ ସ୍ଥାନମାନଙ୍କରେ ୩ଟିରୁ ଅଧିକ ବଜାର ରହିଛି ସେଠାରେ ବିଭିନ୍ନ ଜିନିଷପତ୍ରର ମୂଲ୍ୟସଂଗ୍ରହ ପାଇଁ କେତେକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ଗ୍ରହଣ ପାଇଁକେତେକ ପଦକ୍ଷେପ କଥା ସୁପାରିଶ କରାଯାଇଥିଲା । ଏହା ସତ୍ତ୍ୱେ କମିଟି କେତେକ କ୍ଷେତ୍ରରେ ସବୁକଥାକୁ ଦୃଷ୍ଟିକୁ ନନେଇ ଏକତରଫା ଭାବେ ମଧ୍ୟ ନିଷ୍ପତ୍ତି ନେଇଥିଲା । ସେଥିପାଇଁ କମିଟି ରିପୋର୍ଟ ଉପରେ ଭିନ୍ନ ମତଦେଇ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନେ (ଏମ୍.

କେ. ପାଣ୍ଡେ ଏବଂ ବି. ଏନ୍. ସାଠେ) ଏକ ନୋଟ୍ ଦେଇଥିଲେ । ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ଚାଲିଥିବା ଦୁର୍ନୀତିକୁ କିଭଳି ଉପରୋକ୍ତ କମିଟି ସମ୍ପୂର୍ଣ୍ଣ ଦୃଷ୍ଟି ଦେଇପାରି ନାହିଁ ତାହା ସେମାନେ ଉଲ୍ଲେଖ କରିଥିଲେ ।

## କଳା ବଜାର/ଖୋଲା ବଜାରରୁ ମୂଲ୍ୟ ସଂଗ୍ରହ

ଯେଉଁ ସ୍ଥାନମାନଙ୍କରେ କଣ୍ଟ୍ରୋଲ ଦରିଆରେ ଖାଉଟୀ ଜିନିଷମାନ ଯୋଗାଇ ଦିଆଯାଇଥାଏ, ସେଠାରେ ଉପରୋକ୍ତ ଜିନିଷ ଗୁଡ଼ିକର ଅଭାବ କଣ୍ଟ୍ରୋଲ ଦୋକାନରେ ଦେଖାଦେଲେ ତା'ର ମୂଲ୍ୟ କଳା ବଜାରରେ ଅତ୍ୟଧିକ ବୃଦ୍ଧି ପାଇଥାଏ । ବର୍ତ୍ତମାନ କେନ୍ଦ୍ର ସରକାରଙ୍କ ନୀତି ଦୃଷ୍ଟିରୁ ଏହାକୁ ''ଖୋଲା ବଜାର'' ବୋଲି କହିବା ଦରକାର । ଆବଶ୍ୟକତା ଦୃଷ୍ଟିରୁ ଜନସାଧାରଣ ଅଧିକ ଦାମ୍ ଦେଇ ସେହି ଜିନିଷମାନ କଳାବଜାରରୁ କିଣିବାକୁ ବାଧ ହୁଅନ୍ତି । ସେଥିପାଇଁ କଳାବଜାର (ଖୋଲା ବଜାର) ଦାମକୁ ବିଭିନ୍ନ ଜିନିଷପତ୍ରର ମୂଲ୍ୟ ସଂଗ୍ରହ ବେଳେ ହିସାବକୁ ନେବା ଉଚିତ୍ ବୋଲି ଆନ୍ତର୍ଜାତୀୟ ଶ୍ରମ ସଙ୍ଗଠନ (ଆଇ.ଏଲ୍.ଓ.)ର ଲେବର ଷ୍ଟାଟିଷ୍ଟିସିଆନ୍ ମାନଙ୍କ .ସମ୍ମିଳନୀରେ କୁହାଯାଇଥିଲା । କଳାବଜାରରୁ (ଖୋଲା ବଜାର) ମୂଲ୍ୟତଥ୍ୟ ସଂଗ୍ରହ କରିବା ଅସମ୍ଭବ ନୁହେଁ । ୧୯୫୮ ମସିହାରେ ଏହା କରାଯାଇଥିଲା । ତେଣୁ ଏ କ୍ଷେତ୍ରରେ କଳା ବଜାରରୁ (ଖୋଲା ବଜାର) କେଉଁ କେଉଁ ଜିନିଷ କେତେ ପରିମାଣରେ ଜନସାଧାରଣ କ୍ରୟ କରୁଛନ୍ତି ତା'ର ଏକ ତଥ୍ୟ ସଂଗ୍ରହ କରି ମୂଲ୍ୟସୂଚୀ ଉପରେ ଥିବା ସେହି ଜିନିଷର ଯେତିକି ପ୍ରାଧାନ୍ୟ ତାହା ନିର୍ଦ୍ଧାରଣ କରିବା ଆବଶ୍ୟକ ।

ଏହାଛଡ଼ା କଣ୍ଟ୍ରୋଲ ଦରିଆରେ ଯୋଗାଣ ହେଉଥିବା ଦ୍ରବ୍ୟ ଗୁଡ଼ିକର ମାନ ଅତ୍ୟନ୍ତ ନିମ୍ନ ରହୁଛି । ଫଳରେ ଭଲ ଜିନିଷ କିଣିବା ପାଇଁ ଲୋକେ ବାହାରେ (ଖୋଲା ବଜାରରୁ) ଅଧିକ ମୂଲ୍ୟ ଦେଉଛନ୍ତି । ତେଣୁ କେଉଁ ବଜାରରୁ ଲୋକେ କେତେ ଲେଖାଏଁ ଜିନିଷ କିଣୁଛନ୍ତି ତାହା ନିର୍ଣ୍ଣୟ କରି ମୂଲ୍ୟସୂଚୀ ନିର୍ଦ୍ଧାରଣରେ ତାହାର ପ୍ରତିଫଳନ କରିବା ଦରକାର । ୧୯୬୦କୁ ମୂଳବର୍ଷରୂପେ ସ୍ଥିର କଲାବେଳେ ଯେଉଁସବୁ ଜିନିଷର ମାନ ଯାହା ସ୍ଥିର କରାଯାଇଥିଲା ତାହା ଏବେ ଆଉ ନାହିଁ । ସରକାରଙ୍କ ସମ୍ପୃକ୍ତ ବିଭାଗ ମଧ୍ୟ ଏ ସଂକ୍ରାନ୍ତରେ ଆବଶ୍ୟକୀୟ ତଥ୍ୟ ଏବଂ ଦ୍ରବ୍ୟର ମାନ ରଥ କମିଟିକୁ ଯୋଗାଇ ଦେଇପାରିଲେ ନାହିଁ । ତାହା ମିଳୁନାହିଁ ବୋଲି କହି ଏଡ଼ାଇ ଦେଲେ । ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା ଯେ କେନ୍ଦ୍ର ସରକାରଙ୍କ ଶ୍ରମ ଦପ୍ତର ଏପର୍ଯ୍ୟନ୍ତ ଏହା ଉପରେ କୌଣସି ତଦନ୍ତ କରିନାହାଁନ୍ତି ।

ଏ ସମସ୍ତ ଘଟଣାକୁ ବିଚାରକୁ ନେଇ ମୂଲ୍ୟସୂଚୀରେ ଯେଉଁ ସଂଶୋଧନ କରାଯାଇ ପାରିଥାଆନ୍ତା ତାହା ରଥ କମିଟି କରିନାହାନ୍ତି ।

## ଜିନିଷପତ୍ରର ମୂଲ୍ୟ ସଂଗ୍ରହ କ୍ଷେତ୍ରରେ ଦୁର୍ବଳତା

ବିଭିନ୍ନ ଜିନିଷପତ୍ରର ମୂଲ୍ୟ ସଂଗ୍ରହ ଠିକ୍‌ଭାବେ ହୋଇପାରୁନାହିଁ ବୋଲି ରଥ କମିଟିଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ଯଦି ମୂଲ୍ୟ ସଂଗ୍ରହ ବାର (ଦିନ) ଛୁଟିଦିନ ହୋଇଥାଏ ତେବେ ତାହା ଆଉ ସେହିଦିନ ହୋଇନପାରି ତା' ପରଦିନ ହୋଇଥାଏ । ଯେଉଁସବୁ ଜିନିଷ (ମାଛ, ମାଂସ ଓ ପନିପରିବା ଇତ୍ୟାଦି) ନଷ୍ଟ ହୋଇଯିବାର ସମ୍ଭାବନା ଥାଏ ତାହାର ମୂଲ୍ୟ ନିର୍ଦ୍ଧାରଣ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ସମୟର ଗୁରୁତ୍ୱ ଯଥେଷ୍ଟ ଅଧିକ । ଏହାଛଡ଼ା ବିଭିନ୍ନ ଦୋକାନରୁ ମୂଲ୍ୟସଂଗ୍ରହ କରିବା ମଧ୍ୟ କଷ୍ଟକର ବ୍ୟାପାର । ଦୋକାନୀକୁ ବିରକ୍ତ ନକରି ସଂଗ୍ରାହକକୁ ଦ୍ରବ୍ୟ ମୂଲ୍ୟ ସଂଗ୍ରହ କରିବାକୁ ପଡ଼େ । ତେଣୁ ଯେଉଁ ମୂଲ୍ୟ ଦୋକାନୀ ସଂଗ୍ରାହକକୁ କହେ ସେହି ମୂଲ୍ୟରେ ଯେ ଦୋକାନୀ ଖାଉଟୀକୁ ଜିନିଷ ବିକୁଥିବ ତାହା କୁହାଯାଇ ନପାରେ ।

## ୧୯୬୦ ମସିହା ମୂଲ୍ୟସୂଚୀରେ ସଂଶୋଧନ ପାଇଁ ଟ୍ରେଡ୍ ୟୁନିୟନ୍ ପ୍ରତିନିଧିମାନଙ୍କ ଦ୍ୱାରା ପ୍ରସ୍ତୁତ ନୋଟ୍

ବିଭିନ୍ନ ଜିନିଷର କଳାବଜାର ଅଥବା ଖୋଲାବଜାର ଦର ସମ୍ପର୍କରେ ଅନ୍ୟତ୍ର କୁହାଯାଇଛି । ଯେଉଁସବୁ ଜିନିଷର ଅଭାବ ଦେଖାଦେଇଛି ତାର ଗୁରୁତ୍ୱ ବା ପ୍ରାଧାନ୍ୟ **(Weightage)**କୁ ମୋଟ ଖାଦ୍ୟ ଗ୍ରୁପ୍ ଉପରେ ଦେବାପାଇଁ ଲେବର ବ୍ୟୁରୋ ଯେଉଁ ମତାମତ ଦେଇଛି ତାହା ଠିକ୍ ନୁହେଁ । ଅଧିକ ଦରଦେଇ ଲୋକେ ଜିନିଷ କିଣୁଥିବା ବେଳେ କଳାବଜାର ଦରକୁ ହିସାବକୁ ନେବା ଉଚିତ୍ । ୧୯୬୦ ମସିହାର ମୂଲ୍ୟସୂଚୀ ନିର୍ଦ୍ଧାରଣ ବେଳେ ଯେଉଁସବୁ ଜିନିଷର ଯାହା ମାନ ଥିଲା ସେହି ମାନ ଅନୁଯାୟୀ ଜିନିଷର ମୂଲ୍ୟକୁ ବର୍ତ୍ତମାନ ହିସାବକୁ ନିଆନଯାଇ ନିମ୍ନମାନର ଜିନିଷକୁ ଗ୍ରହଣ କରାଯାଉଛି । ଏହା ହେବା ଠିକ୍ ନୁହେଁ । ଅବିକଳ ମାନର ଜିନିଷ ମିଳୁନଥିଲେ ସେହି ପାଖାପାଖି ମାନର ଜିନିଷକୁ ଗ୍ରହଣ କରି ଦ୍ରବ୍ୟ ମୂଲ୍ୟ ସଂଗ୍ରହ କରିବା ଦରକାର । ଲୁଗାପଟା କ୍ଷେତ୍ରରେ ମଧ୍ୟ ଠିକ୍ ସେହି ଅବସ୍ଥା । ଯୋତା କ୍ଷେତ୍ରରେ ବର୍ତ୍ତମାନ ସଂଗ୍ରହ କରାଯାଉଥିବା ମାନ ଅତ୍ୟନ୍ତ ନିକୃଷ୍ଟ ଧରଣର । ପୂର୍ବରୁ ସମସ୍ତ ଜୋତାଟି ଚମଡ଼ାରେ ତିଆରି ହେଉଥିଲା । ବର୍ତ୍ତମାନ ଜୋତାରେ, କାନଭାସ୍ ଦିଆଯାଉଛି । ଜୋତାର ସୋଲ୍ ରବର କିମ୍ବା କାଠରେ ତିଆରି ହେଉଛି । ତେଣୁ ଜିନିଷର

ମାନରେ ପାର୍ଥକ୍ୟ ଦେଖାଦେଉଛି । ଫଳରେ ପ୍ରକୃତ ମୂଲ୍ୟସୂଚୀ ପ୍ରତିଫଳିତ ହେଉନାହିଁ । ଥାଳି, ଚା', ଲୁଣି ବିସ୍କୁଟ୍, ମିଠା, ଦୁଧ ଆଦି କ୍ଷେତ୍ରରେ ଜିନିଷର ମାନ ହ୍ରାସ ଘଟିଛି । ଏ ସମସ୍ତ କଥା ରଥ କମିଟି ଅନୁଭବ କରିଥିଲେ ବି ଏ ସମ୍ପର୍କରେ ଅଧିକ ତଥ୍ୟର ଅଭାବ ରହିଛି ବୋଲି କହି ମୂଲ୍ୟସୂଚୀରେ ସଂଶୋଧନ କଲେନାହିଁ ।

ଏହାଛଡ଼ା ବହୁ ଜିନିଷରେ ଅପମିଶ୍ରଣ ଘଟି ଜିନିଷର ମାନ ହ୍ରାସ ଘଟିଛି । ଖାଇବା ତେଲ, ଅନ୍ୟାନ୍ୟ ତୈଳଜାତ ଦ୍ରବ୍ୟ, ଦୁଧ, ଘିଅ, ମସଲା ଆଦି କ୍ଷେତ୍ରରେ ଏହା ଅଧିକ ଘଟିଛି । ଏହା ଫଳରେ ପ୍ରକୃତ ମୂଲ୍ୟବୃଦ୍ଧି ପ୍ରତିଫଳିତ ହେଉନାହିଁ ।

## ସିଲ୍ କମିଟିର ମନମୁଖୀ କାର୍ଯ୍ୟ

ରଥ କମିଟି ଦେଇଥିବା ସୁପାରିଶ ଗୁଡ଼ିକ କାର୍ଯ୍ୟକାରୀ କରିବାପାଇଁ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍‌ମାନଙ୍କ ସହ ଆଲୋଚନା କରିବା ପରିବର୍ତ୍ତେ କେନ୍ଦ୍ର ସରକାର କେନ୍ଦ୍ର ପରିସଂଖ୍ୟାନ ସଂସ୍ଥାର ଡାଇରେକ୍ଟର ଜେନେରାଲ ଡଃ କେ. ସି. ସିଲ୍‌ଙ୍କ ଅଧକ୍ଷତାରେ ରଥ କମିଟିଙ୍କ ସୁପାରିଶ ଗୁଡ଼ିକୁ ଅନୁଧାନ କରିବାପାଇଁ ଆଉ ଏକ କମିଟି ନିଯୁକ୍ତ କଲେ । କିନ୍ତୁ ଏହି କମିଟିରେ ଜଣେହେଲେ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍ ପ୍ରତିନିଧି ନିଆଯାଇ ନଥିଲେ । କମିଟି ଦେଶ ଭିତରେ ୪୦ ଜଣଙ୍କୁ ଭେଟି ସେମାନଙ୍କ ମତାମତ ସଂଗ୍ରହ କରିଥିଲେ ବି ସେମାନଙ୍କ ମଧ୍ୟରେ କେହି ଜଣେହେଲେ ମଧ୍ୟ କୌଣସି ଟ୍ରେଡ୍ ୟୁନିୟନ୍ ସଙ୍ଗଠନର ନଥିଲେ । ଟ୍ରେଡ୍ ୟୁନିୟନ୍‌ମାନଙ୍କ ମତାମତକୁ ଭୃକ୍ଷେପ ନକରି ୧୯୮୧-୮୨ ବର୍ଷକୁ ମୂଳବର୍ଷ ରୂପେ ଧରି ଏକ ନୂତନ ମୂଲ୍ୟସୂଚୀ ବର୍ଷ ନିର୍ଦ୍ଧାରଣ ପାଇଁ ସୁପାରିଶ କରାଗଲା । ଏପରିକି ରଥ କମିଟି ଦେଇଥିବା କେତେକ ଅତି ଯୁକ୍ତିଯୁକ୍ତ ସୁପାରିଶକୁ ସିଲ୍ କମିଟି ପ୍ରତ୍ୟାଖ୍ୟାନ କରିଦେଲା । ଅତ୍ୟନ୍ତ ଆଶ୍ଚର୍ଯ୍ୟ କଥା ଯେ ଜଣେ ବ୍ୟକ୍ତି ଯେ କି ରଥ କମିଟି ଓ ସିଲ୍ କମିଟିରେ ସଭ୍ୟ ସେକ୍ରେଟାରୀ ଭାବେ କାର୍ଯ୍ୟ କରିଥିଲେ, ସେ ସିଲ୍ କମିଟିଙ୍କ ସୁପାରିଶ ସହ ଏକମତ ହୋଇ ରଥ କମିଟିଙ୍କ ସୁପାରିଶକୁ ନାକଚ୍ କରିବା ପାଇଁ ମତ ଦେଲେ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଉକ୍ତ ସଭ୍ୟ-ସେକ୍ରେଟାରୀ ପୂର୍ବରୁ ରଥ କମିଟିଙ୍କ ସୁପାରିଶ ସହ ମଧ୍ୟ ସମ୍ପୂର୍ଣ୍ଣ ଏକମତ ହୋଇଥିଲେ । ଏହିଭଳି ଘୃଣ୍ୟ ସିଲ୍ କମିଟିଙ୍କ ସୁପାରିଶକୁ କେନ୍ଦ୍ର ସରକାର ଗ୍ରହଣ କରି ନେଇଛନ୍ତି ।

ପ୍ରାଥମିକ ଭାବେ କେନ୍ଦ୍ରୀୟ ଟ୍ରେଡ଼ ୟୁନିୟନ ମାନଙ୍କ ସହ କଥାବାର୍ତ୍ତା ନକରି କିଭଳି ପାରିବାରିକ ବଜେଟ୍ ଅନୁଧାନ (Family Budget Studies) କରାଯାଏ ତାହା ଲେବର

ବ୍ୟୁରୋ ଦେଶର ବିଭିନ୍ନ କେନ୍ଦ୍ରକୁ ଯାଇ ବୁଝାଇବା ଆରମ୍ଭ କଲେ । ଏ ସମସ୍ତ ସ୍ଥାନରେ ଟ୍ରେଡ୍ ୟୁନିୟନ୍‌ମାନେ ଏ ସଂକ୍ରାନ୍ତରେ କେନ୍ଦ୍ରୀୟ ଟ୍ରେଡ୍ ୟୁନିୟନ୍‌ମାନଙ୍କ ସହ ଆଲୋଚନା କରିବା ପାଇଁ ଦାବି କଲେହେଁ ସେଥିପ୍ରତି କର୍ଣ୍ଣପାତ କରାଗଲା ନାହିଁ । ପାରିବାରିକ ବଜେଟ୍ ସଂକ୍ରାନ୍ତୀୟ ଅନୁଧ୍ୟାନ ଯେ କିଭଳି ତ୍ରୁଟିପୂର୍ଣ୍ଣ ତାହା ନିମ୍ନୋକ୍ତ ଉଦାହରଣରୁ ବେଶ୍ ସୁସ୍ପଷ୍ଟ ।

୧୯୬୦ ମସିହାରୁ ୧୯୮୦-୮୧ ବର୍ଷ ମଧ୍ୟରେ ବମ୍ବେ ସହରର ଲୋକସଂଖ୍ୟା ହାରାହାରି ୬୦% ବୃଦ୍ଧି ପାଇଛି । ଭାରତବର୍ଷର ବିଭିନ୍ନ ସହରରେ ଜନସଂଖ୍ୟା ମଧ୍ୟ ପାଖାପାଖି ସେହି ହାରରେ ବୃଦ୍ଧି ପାଇଛି । ଏହି ପରିସ୍ଥିତିରେ ୧୯୬୦ ମସିହାକୁ ମୂଳବର୍ଷ ରୂପେ ଧରିବା ପାଇଁ ୧୯୬୦ ମସିହାରେ ବମ୍ବେ ସହରରେ ୧୪୪୦ଟି ପରିବାର ଉପରେ ସମୀକ୍ଷା କରାଗଲା ବେଳେ ୧୯୮୨ରେ ମାତ୍ର ୧୫୧୨ ପରିବାର ଉପରେ ସମୀକ୍ଷା କରାଯାଇଛି । କିନ୍ତୁ ଆଉ କେତେକ ସ୍ଥାନରେ ଏହି ସଂଖ୍ୟା ମଧ୍ୟ ହ୍ରାସ ପାଇଛି । ଯଥା :- ନାଗପୁରରେ ଏହି ସଂଖ୍ୟା ଯଥାକ୍ରମେ ୭୨୦ ଓ ୬୪୮ । ସୋଲାପୁରରେ ମଧ୍ୟ ଠିକ୍ ସେଇ ଅବସ୍ଥା ।

୧୯୮୨ ମସିହାକୁ ମୂଲ୍ୟସୂଚୀର ମୂଳବର୍ଷ ରୂପେ ଧରିବା ପାଇଁ ମଧ୍ୟ ଆହୁରି ବହୁ ଗଫଲତି କାମ କରାଯାଇଛି । ଏପରିକି ବ୍ରିଟିଶ୍‌ମାନଙ୍କ ଶାସନ କାଳରେ ୧୯୦୯ରୁ ୧୯୩୯ ମସିହା ମଧ୍ୟରେ ଖାଦ୍ୟ ଗ୍ରୁପ୍ ଭିତରେ ୨୦ରୁ ୨୬ ପ୍ରକାର ଜିନିଷପତ୍ର ସଂଗ୍ରହ କରି ତାର ମୂଲ୍ୟକୁ ହିସାବ କରାଯାଉଥିଲା । କିନ୍ତୁ ୧୯୮୨ ମସିହା ମୂଲ୍ୟସୂଚୀ ନିର୍ଦ୍ଧାରଣ ବେଳେ ମାତ୍ର ୧୨ ପ୍ରକାର ଦ୍ରବ୍ୟ ସଂଗ୍ରହ କରାଯାଇଛି ।

## ବାସଗୃହ ସୂଚୀକୁ ନିମ୍ନ କରି ଦର୍ଶାଯାଇଛି

ମୂଲ୍ୟସୂଚୀର ମୂଳବର୍ଷ ନିର୍ଦ୍ଧାରଣ ହେବା ପରଠାରୁ ନୂତନ ଭାବେ ତିଆରି ହୋଇଥିବା ଘରଗୁଡ଼ିକୁ ମୂଲ୍ୟସୂଚୀ ନିର୍ଦ୍ଧାରଣ ପାଇଁ ଗ୍ରହଣ କରିବାକୁ ରଥ କମିଟି ସୁପାରିଶ କରିଥିଲେ ପୁରାତନ ଘରଗୁଡ଼ିକରଭଡ଼ା ତୁଳନାରେ ନୂତନ ଘର ଗୁଡ଼ିକର ଭଡ଼ା ଅପେକ୍ଷାକୃତ ବହୁ ଅଧିକ ହାରରେ ବୃଦ୍ଧି ପାଉଥିବାରୁ ରଥ କମିଟି ଏଭଳି ସୁପାରିଶ କରିଥିଲେ । ଏହାଛଡ଼ା ସହରମାନଙ୍କରେ ଘରଟିଏ ପାଇବା ପାଇଁ କେତେ ଟଙ୍କା ଯେ ଅଗ୍ରୀମ ଭାବେ କିମ୍ବା ଭେଟି ବା ପଗଡ଼ି ଭାବେ ଦେବାକୁ ପଡ଼େ ତାହା ସମସ୍ତେ ଜାଣନ୍ତି । ଏହା ଫଳରେ ଘରଭଡ଼ା ମୂଲ୍ୟ ବିଶେଷଭାବେ ବଢ଼େ ବୋଲି ଉପରକୁ ସେତେଟା ଜଣାପଡ଼େ ନାହିଁ । କିନ୍ତୁ ଏ କ୍ଷେତ୍ରରେ ରଥ କମିଟିଙ୍କ ସୁପାରିଶକୁ ସିଲ୍ କମିଟି ଗ୍ରହଣ କରିନାହାଁନ୍ତି । ନୂତନ ବାସଗୃହ ନିର୍ମାଣ ଘରଭଡ଼ା

ହ୍ରାସ କରିବ ବୋଲି ଅଦ୍ଭୁତ ଯୁକ୍ତି ସିଲ୍ କମିଟି ବାଢ଼ିଛନ୍ତି । ମୂଲ୍ୟସୂଚୀ ନିର୍ଣ୍ଣୟ କଲାବେଳେ ଜାଳେଣୀ, ଆଲୁଅ, ଆସବାବପତ୍ର, କାଠ ଆଲମିରା, ପଙ୍ଖା, ପରଦା, ବିଦ୍ୟୁତ୍ ଯନ୍ତ୍ରପାତି ଆଦି ମଧ୍ୟ ହିସାବକୁ ନେବା କଥା । କିନ୍ତୁ ତାହା ୧୯୮୧ ମସିହା ସର୍ଭେରେ ନିଆଯାଇ ନାହିଁ । ଏପରିକି ବିଭିନ୍ନ ଶିଳ୍ପ କେନ୍ଦ୍ରରେ ଏବଂ ବ୍ୟବସାୟିକ ସହରମାନଙ୍କରେ ଜମିର ଯେଉଁ ଅସ୍ୱାଭାବିକ ମୂଲ୍ୟବୃଦ୍ଧି ଘଟିଛି ତାହା ହିସାବକୁ ନିଆଯାଇ ନାହିଁ ।

## ମୂଲ୍ୟସୂଚୀ ନିର୍ଦ୍ଧାରଣରେ ହେଉଥିବା ଗଫଲତିର ଆଉ କେତୋଟି ଦିଗ

୧. ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ମନୋନୀତ ହେଉଥିବା ବିଭିନ୍ନ କେନ୍ଦ୍ର ଗୁଡ଼ିକର ଭୂମିକା ଯଥେଷ୍ଟ ଅଧିକ । ଯେଉଁ ସ୍ଥାନରେ ବହୁ ଅଧିକ ଶ୍ରମିକ କାମ କରନ୍ତି, ସେହି ସ୍ଥାନଗୁଡ଼ିକୁ ମନୋନୀତ କରାଯିବା ଉଚିତ । କିନ୍ତୁ ମାଲିକ ଗୋଷ୍ଠୀର ସ୍ୱାର୍ଥ ପାଇଁ ବହୁ ସମୟରେ ଏଭଳି ସ୍ଥାନଗୁଡ଼ିକ ଠିକଣା ନକରି ଅପେକ୍ଷାକୃତ କମ ଶ୍ରମିକ କାମ କରୁଥିବା କେନ୍ଦ୍ରଗୁଡ଼ିକୁ ମନୋନୀତ କରାଯାଏ । କମ୍ ଶ୍ରମିକ କାମ କରୁଥିବା କେନ୍ଦ୍ର ଗୁଡ଼ିକରେ ଦ୍ରବ୍ୟ ମୂଲ୍ୟ କମ୍ ହାରରେ ବୃଦ୍ଧି ପାଉଥିବା ଦୃଷ୍ଟିରୁ ମୂଲ୍ୟସୂଚୀର ସଠିକ୍ ନିର୍ଦ୍ଧାରଣ ହୋଇପାରେ ନାହିଁ । ଏହା ଫଳରେ ଶ୍ରମିକମାନେ କ୍ଷତିଗ୍ରସ୍ତ ହୁଅନ୍ତି । ଉଦାହରଣ ସ୍ୱରୂପ, ବିଶାଖାପାଟଣା, କୋଥାକୋଦାମ ଭଳି ଶ୍ରମିକ କେନ୍ଦ୍ର ଗୁଡ଼ିକ ୧୯୬୦ ମସିହା ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ମନୋନୀତ ହୋଇନଥିଲା । ଏପରିକି କୋଥାକୋଦାମ ଏବଂ ଧାନବାଦ ଭଳି ଶ୍ରମିକ କେନ୍ଦ୍ର ଗୁଡ଼ିକୁ ୧୯୮୨ ବର୍ଷ ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ମଧ୍ୟ ମନୋନୀତ କରାଯାଇନାହିଁ ।

୨. ବିଭିନ୍ନ ଶ୍ରମିକ କେନ୍ଦ୍ର ଗୁଡ଼ିକରେ ଯେତେବେଳେ ପାରିବାରିକ ବଜେଟ୍ ସାମ୍ପଲ ସର୍ଭେ ପାଇଁ କେତେକ ଶ୍ରମିକ ପରିବାରକୁ ମନୋନୀତ କରାଯାଏ ସେତେବେଳେ ତାହା ଏକ ନିର୍ଦ୍ଦିଷ୍ଟ ନୀତି ଉପରେ ପର୍ଯ୍ୟବେସିତ ହେବା ଦରକାର । ବହୁ ସମୟରେ ବହୁ ଅଧିକ ଶ୍ରମିକ କାମ କରୁଥିବା କେନ୍ଦ୍ରରେ ଅତ୍ୟନ୍ତ ମନମୁଖୀ ଭାବେ ଯେଉଁ ଅଳ୍ପ କେତୋଟି ପରିବାରକୁ ମନୋନୀତ କରାଯାଏ ସେଥିରେ ମଧ୍ୟ ଗଫଲତି ଥାଏ । ଜଣିକିଆ ପରିବାରକୁ ଅଧିକ ସମୟରେ ମନୋନୀତ କରାଯାଏ । ଏହା ଫଳରେ ପାରିବାରିକ ବଜେଟ୍‌ର ସଠିକ୍ ସର୍ଭେ ହୋଇପାରେ ନାହିଁ । ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ କଲିକତା ସହରରେ ଯେଉଁ ୯୦୦-୯୫୦ଟି ଶ୍ରମିକ ପରିବାରକୁ

ମନୋନୀତ କରାଯାଇଥିଲା ସେଥିରୁ ୬୭୨ଟି ପରିବାରର ମାତ୍ର ଜଣେ ଲେଖାଏଁ ସଭ୍ୟ ଥିଲେ । ଏହାଛଡ଼ା ଆଉ କେତେକ କ୍ଷେତ୍ରରେ ଗୋଟିଏ ଗୋଟିଏ ପରିବାରର ୭/୮ ଜଣ ସଭ୍ୟ ମାତ୍ର ଗୋଟିଏ ବଖରା ଘରେ ରହୁଥିବାରୁ ଘରଭଡ଼ା ସୂଚୀର ପ୍ରକୃତ ପ୍ରତିଫଳନ ହୁଏନାହିଁ । ଏହାଛଡ଼ା ଯେଉଁ ସ୍ଥାନମାନଙ୍କରେ ଶ୍ରମିକମାନେ ନୂତନ ଭାବେ ଘରଭଡ଼ା ନେଇ ରହିଥାଆନ୍ତି ସେ ସ୍ଥାନ ଗୁଡ଼ିକୁ ମଧ୍ୟ ସର୍ଭେ କରିବା ପାଇଁ କେହି ଯାଆନ୍ତି ନାହିଁ । ଏସବୁ ଫଳରେ ମୂଲ୍ୟ ସୂଚୀ ନିମ୍ନରେ ରହେ । ତେଣୁ ସାମ୍ପଲ୍ ସର୍ଭେ ପାଇଁ ଶ୍ରମିକ ପରିବାର ଗୁଡ଼ିକୁ ମନୋନୀତ କରିବା ଏବଂ ପାରିବାରିକ ବଜେଟ୍ ଅନୁଧାନ କରିବା ଏକ ଗୁରୁତ୍ୱପୂର୍ଣ୍ଣ କଥା ।

୩. ଦ୍ରବ୍ୟମୂଲ୍ୟ ସଂଗ୍ରହ କରିବାକୁ ଯାଉଥିବା ଇନ୍‌ଭେଷ୍ଟିଗେଟର ବା ତାଙ୍କ ଉପରେ ଥିବା ଇନ୍‌ସ୍‌ପେକ୍ଟରମାନେ ସଦାବେଳିଆ କର୍ମଚାରୀ ନୁହଁନ୍ତି । ସେମାନଙ୍କ ଭତ୍ତା, ଯାତାୟତ ଖର୍ଚ୍ଚ ବିଶେଷ ନଗଣ୍ୟ । ୩୦୦-୪୦୦ ସାମଗ୍ରୀର ଦ୍ରବ୍ୟ ମୂଲ୍ୟ ବୃଦ୍ଧି ରେକର୍ଡ଼ କରି ଆଣିବା ପାଇଁ ସେମାନଙ୍କୁ ପ୍ରାୟ ୩/୪ ଘଣ୍ଟା ସମୟ ମିଳିଥାଏ । ଏହି ସମୟ ମଧ୍ୟରେ ସଠିକ୍ ଭାବେ ସାମ୍ପଲ ଦ୍ରବ୍ୟ ସହ ସାମଞ୍ଜସ୍ୟ ଥିବା ଦେଖି ଦ୍ରବ୍ୟ ମୂଲ୍ୟ ସଂଗ୍ରହ କରିବା ଆଦୌ ସମ୍ଭବ ନୁହେଁ । ଦ୍ରବ୍ୟମୂଲ୍ୟ ସଂଗ୍ରହ କ୍ଷେତ୍ରରେ ଦୁର୍ନୀତି ହୁଏ । କେତେକ ସମୟରେ ଆଦୌ ଦୋକାନକୁ ନଯାଇ ଅଥବା ମାସରେ ୪ ଥର ଯିବା ପରିବର୍ତ୍ତେ ୧/୨ ଥର ଯାଇ କିମ୍ବା କୌଣସି ଶ୍ରମିକ ପରିବାର ଘରକୁ ସର୍ଭେ ପାଇଁ ନଯାଇ ଅଥବା ଯିବାପରେ ତାକୁ ନପାଇ ଫେରିଆସିବା ପରେ ମନକୁ ମନ ହିସାବ ଫର୍ଦ୍ଦ ଭର୍ତ୍ତି କରିଦିଆଯାଏ । ଏହାର ମଧ୍ୟ ସଠିକ୍ ଭାବେ ତନଖି (ଇନ୍‌ସପେକ୍‌ସନ୍) ହୁଏନାହିଁ । ଏହା ଫଳରେ ମୂଲ୍ୟସୂଚୀର ସଠିକ୍ ନିର୍ଦ୍ଧାରଣ ସମ୍ଭବ ନୁହେଁ । ଯାତାୟତର ସୁବିଧା ନଥିବା ସ୍ଥାନରେ କେତେକ ଦୋକାନକୁ ସାମ୍ପଲ୍ ଦର ସଂଗ୍ରହ ପାଇଁ ମନୋନୀତ କରିବା ସେହି ସ୍ଥାନକୁ ଆଦୌ ନଯାଇ ରିପୋର୍ଟ ଦେବାର ଅନ୍ୟତମ କାରଣ ।

୪. ମୂଲ୍ୟସୂଚୀ ନିର୍ଦ୍ଧାରଣ ସମୟରେ ଯେଉଁ ପ୍ରକାର ସାମ୍ପଲ ଗ୍ରହଣ କରାଯାଇଥିଲା, ଦ୍ରବ୍ୟ ମୂଲ୍ୟ ସଂଗ୍ରହ କଲାବେଳେ ତାକୁ (ସେହି ଗୁଡ଼ିକୁ) କଡ଼ାକଡ଼ି ଭାବେ ଲାଗୁ କରାଯାଉ ନାହିଁ । ଉଦାହରଣ ସ୍ୱରୂପ, ଗୁଆଘିଅ ବଦଳରେ ବନସ୍ପତି, ସୋରିଷତେଲ ବଦଳରେ ରେପ୍‌ସିଡ୍ ତେଲ ବ୍ୟବହାର କରାଯାଉଛି । ବିଭିନ୍ନ ମିଠା

ଓ ଜଳଖିଆ ଜିନିଷର ମାନ ଏବଂ ଆକାର କମାଇ ଦିଆଯାଉଛି । ଏହା ଫଳରେ ବାସ୍ତବ ମୂଲ୍ୟ ବୃଦ୍ଧିକୁ ଲୁକ୍କାୟିତ କରି ରଖାଯାଉଛି ।

୫. ସିନେମା, ଥିଏଟର ଆଦି ଆମୋଦପ୍ରମୋଦ କ୍ଷେତ୍ରରେ ଯେଉଁ ବ୍ୟୟବୃଦ୍ଧି ଘଟୁଛି ତାହା ଉପରକୁ ଜଣାପଡୁନାହିଁ । ପୂର୍ବରୁ ଦ୍ୱିତୀୟ/ତୃତୀୟ ଶ୍ରେଣୀର ଟିକେଟ୍ କଲେ ଯେଉଁ ପ୍ରକାର ଆସନ, ସୁବିଧା ମିଳୁଥିଲା ବର୍ତ୍ତମାନ ତାହା ପ୍ରଥମ ଶ୍ରେଣୀ ଟିକେଟ୍‌ରେ ମିଳୁଛି । ତୃତୀୟ ଶ୍ରେଣୀ ଟିକେଟ୍ ବହୁ ସ୍ଥାନରେ ଉଠିଗଲାଣି । ଦ୍ୱିତୀୟ ଶ୍ରେଣୀ ଟିକେଟ୍‌ର ସଂଖ୍ୟା ବହୁ କମ୍ । ଏହା ଫଳରେ ଲୋକେ ପ୍ରଥମ ଶ୍ରେଣୀ ବା ସ୍ପେସାଲ୍ ଶ୍ରେଣୀ ଟିକେଟ୍‌ରେ ସିନେମା ଦେଖିବାକୁ ବାଧ ହେଉଛନ୍ତି । କିନ୍ତୁ ଦ୍ୱିତୀୟ/ ତୃତୀୟ ଶ୍ରେଣୀ ଟିକେଟ୍ ମୂଲ୍ୟସୂଚୀ ନିର୍ଦ୍ଧାରଣ ପାଇଁ ହିସାବ ହେଉଛି ।

୬. ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଅନ୍ୟାନ୍ୟ ଆନୁସଙ୍ଗିକ ଖର୍ଚ୍ଚକୁ ମଧ୍ୟ ହିସାବକୁ ନିଆଯାଇଥାଏ । କିନ୍ତୁ ୧୯୮୨ ମସିହା ସର୍ଭେରେ ସ୍ୱାସ୍ଥ୍ୟସେବା, ବ୍ୟକ୍ତିଗତ ଯତ୍ନ, ଶିକ୍ଷା, ଆମୋଦ ପ୍ରମୋଦ, ଯାତାୟତ ଆଦି ସମ୍ପର୍କରେ ବିଶେଷ କିଛି କୁହାଯାଇ ନାହିଁ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ୧୯୬୩ ମସିହା ରିପୋର୍ଟରେ ସ୍ୱାସ୍ଥ୍ୟସେବା, ବ୍ୟକ୍ତିଗତ ଯତ୍ନ, ବୀମା ଓ ଅନ୍ୟାନ୍ୟ ଦେୟ, ଶିକ୍ଷା, ଟେଲିଫୋନ୍, ଡାକଖର୍ଚ୍ଚ, ଆମୋଦ ପ୍ରମୋଦ, ଯାତାୟତ, ତମାଖୁ, ଚାକର ଆଦି ବାବଦ ଖର୍ଚ୍ଚ ହିସାବକୁ ନିଆଯାଇଥିଲା ।

୮. ଠିକ୍ ସେହିପରି ଲୁଗାପଟା କ୍ଷେତ୍ରରେ ମୂଲ୍ୟସୂଚୀ ନିର୍ଦ୍ଧାରଣକାରୀମାନେ କମ୍ପାନୀର ଖୁଚୁରା ଦୋକାନରୁ ଏକ ନିର୍ଦ୍ଦିଷ୍ଟ ପ୍ରକାରର ଲୁଗାଦାମ୍ ବୁଝି ସେହିମୂଲ୍ୟ ହିସାବକୁ ନେଉଛନ୍ତି । କମ୍ପାନୀ ଦୋକାନରେ ତାହା କେବଳ ଦର୍ଶନୀୟ ବସ୍ତୁଭାବେ ରହିଛି । ଲୋକଙ୍କ ପାଇଁ ଅଲଗା ପ୍ରକାରର ଜିନିଷ, ଯାହାର ମୂଲ୍ୟ ବହୁ ଅଧିକ । ଲୋକେ ଅଧିକ ମୂଲ୍ୟ ଦେଇ ନିଜର ଗୁଜରାଣ ମେଣ୍ଟାଇବାକୁ ବାଧ । କିନ୍ତୁ, ତାହା ମୂଲ୍ୟସୂଚୀ ନିର୍ଦ୍ଧାରଣରେ ପ୍ରତିଫଳିତ ହେଉନାହିଁ । ଲୁଗାକଳ ମାଲିକ ଗୋଷ୍ଠୀ ଏଭଳି କାରସାଦି ଚଳାଇଛନ୍ତି ।

ପାରିବାରିକ ବଜେଟ୍ ଅନୁଧାନ **(Family Budget Studies)** ସଠିକ୍ ଭାବେ ନହେଉଥିବାରୁ ତାହାର ପ୍ରତିଫଳନ ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଘଟିବା ସ୍ୱାଭାବିକ । ଫଳରେ ଯେଉଁସବୁ ଜିନିଷର ମୂଲ୍ୟ ଅପେକ୍ଷାକୃତ ଅଧିକ ବୃଦ୍ଧି ପାଉଛି ତା' ଉପରେ ମୂଲ୍ୟସୂଚୀରେ

ପ୍ରାଧାନ୍ୟ ବା ଗୁରୁତ୍ୱ (Weightage) କମ୍ ଥିଲାବେଳେ ଅପେକ୍ଷାକୃତ କମ୍ ହାରରେ ବୃଦ୍ଧି ପାଉଥିବା ଜିନିଷପତ୍ର ଉପରେ ମୂଲ୍ୟସୂଚୀର ପ୍ରାଧାନ୍ୟ ବା ଗୁରୁତ୍ୱ ଅଧିକ ଦିଆଯାଉଛି। ଦୁଇଟି ମୂଲ୍ୟସୂଚୀ ବର୍ଷରେ ବିଭିନ୍ନ କିସମର ଜିନିଷ ଉପରେ ରହିଥିବା ଓଜନ ବା ପ୍ରାଧାନ୍ୟ (Weightage) ର ଏକ ତୁଳନାତ୍ମକ ଚିତ୍ର ତଳେ ଦିଆଗଲା।

| | ଗ୍ରୁପ୍ | ୧୯୬୦ ବର୍ଷ ମୂଲ୍ୟସୂଚୀର ପ୍ରାଧାନ୍ୟ | ୧୯୮୨ ବର୍ଷ ମୂଲ୍ୟସୂଚୀର ପ୍ରାଧାନ୍ୟ |
|---|---|---|---|
| ୧. | ଖାଦ୍ୟଦ୍ରବ୍ୟ | ୬୦.୯୨ | ୫୭.୦୦ |
| ୨. | ପାନ, ଗୁଆ, ତମାଖୁ ଇତ୍ୟାଦି | ୪.୭୯ | ୩.୧୫ |
| ୩. | ଜାଳେଣୀ ଓ ଆଲୁଅ | ୫.୭୭ | ୬.୨୮ |
| ୪. | ବାସଗୃହ | ୬.୨୬ | ୮.୬୭ |
| ୫. | କପଡ଼ା, ବେଡ଼ିଂ, ଜୋତା ଇତ୍ୟାଦି | ୮.୫୪ | ୮.୫୪ |
| ୬. | ବିବିଧ ଜିନିଷ ଏବଂ ସ୍ୱାସ୍ଥ୍ୟରକ୍ଷା, ଶିକ୍ଷା, ସେବା, ଗମନାଗମନ, ବ୍ୟକ୍ତିଗତ ଯତ୍ନ ଇତ୍ୟାଦି | ୧୩.୭୨ | ୧୬.୩୬ |
| | ମୋଟ | ୧୦୦.୦୦ | ୧୦୦.୦୦ |

## ମୂଲ୍ୟସୂଚୀର ନୂତନ ମୂଳବର୍ଷ ନିର୍ଦ୍ଧାରଣକୁ ବିରୋଧ

୧୯୬୦ ମସିହା ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଥିବା ତ୍ରୁଟିକୁ ସଂଶୋଧନ ନକରି ମୂଳବର୍ଷ ପରିବର୍ତ୍ତନର ଚକ୍ରାନ୍ତ ଶ୍ରମିକମାନଙ୍କୁ କେବଳ ଅଧିକ ଶୋଷଣ ପାଇଁ ଉଦ୍ଦିଷ୍ଟ ଜନତା ଦଳ କେନ୍ଦ୍ର ଶାସନକୁ ଆସିବା ପରେ ୧୯୬୦ ମସିହାରୁ ୧୯୭୧କୁ ମୂଲ୍ୟସୂଚୀ ନିର୍ଦ୍ଧାରଣର ମୂଳବର୍ଷ ରୂପେ ପରିବର୍ତ୍ତନ କରିବା ପାଇଁ ୧୯୭୮ ମସିହାରେ ଅପଚେଷ୍ଟା କରିଥିଲା। କିନ୍ତୁ ଟ୍ରେଡ୍ ୟୁନିୟନ୍ ଆନ୍ଦୋଳନର ବିରୋଧ ଯୋଗୁଁ ସେହି ଚକ୍ରାନ୍ତକୁ ପଣ୍ଡ କରାଯାଇପାରିଲା। ଏବେ କିନ୍ତୁ ୧୯୮୨କୁ ମୂଲ୍ୟସୂଚୀର ମୂଳବର୍ଷ ଭାବେ ଗ୍ରହଣ କରି ତଦନୁଯାୟୀ ଶ୍ରମିକ କର୍ମଚାରୀମାନଙ୍କୁ ମହଙ୍ଗାଭତ୍ତା ମିଳୁଛି। ୧୯୬୦ ତୁଳନାରେ ୧୯୮୨ ମୂଲ୍ୟସୂଚୀରେ ପ୍ରାୟ ଦେଶର ୩/୪ ଅଂଶ କେନ୍ଦ୍ରରେ ଜିନିଷପତ୍ରର ମୂଲ୍ୟବୃଦ୍ଧି ନିମ୍ନ ହାରରେ ବୃଦ୍ଧି ପାଉଛି। ୧୯୬୦ ତୁଳନାରେ ୧୯୮୨ର ମୂଲ୍ୟସୂଚୀ ୪.୭୫ ଗୁଣ ହୋଇଥିବାରୁ (୧୯୮୨ ମୂଳବର୍ଷ ଖାଉଟୀ ମୂଲ୍ୟସୂଚୀରେ ଗଫଲ୍ତି ହୋଇଥିବାରୁ)ମୂଲ୍ୟସୂଚୀ ପରିବର୍ତ୍ତନ ପାଇଁ

୪.୭୫କୁ ଗୁଣନୀୟକ ଭାବେ ଗ୍ରହଣ କରିବା ପାଇଁ କେନ୍ଦ୍ର ସରକାର ଅପଚେଷ୍ଟା କରିଥିଲେ । ଏହା ହୋଇଥିଲେ ଶ୍ରମିକମାନେ ବହୁ ପରିମାଣରେ କ୍ଷତିଗ୍ରସ୍ତ ହୋଇଥାନ୍ତେ । ଏକ ସମୀକ୍ଷାରୁ ଜଣାଯାଇଛି ଯେ କେବଳ ୧୯୮୫ ବର୍ଷରେ ଏହି ମୂଲ୍ୟସୂଚୀ ମୂଳବର୍ଷ ପରିବର୍ତ୍ତନ ଫଳରେ ଶ୍ରମିକମାନେ ୨୨୯ ପଏଣ୍ଟର ମହଙ୍ଗା ଭତ୍ତା ଦର୍ଶାଇଥାଆନ୍ତେ । ତଳେ ଏହାର ଏକ ହିସାବ ଦିଆଗଲା ।

## ସର୍ବଭାରତୀୟ ଖାଉଟୀ ମୂଲ୍ୟସୂଚୀରେ ପରିବର୍ତ୍ତନ (୧୯୬୦ ଓ ୧୯୮୨)
## ୧୯୮୫ ମସିହାରେ

| ମାସ | ଖାଉଟୀ ମୂଲ୍ୟସୂଚୀ ୧୯୮୨ = ୧୦୦ | ଖାଉଟୀ ମୂଲ୍ୟସୂଚୀ ୧୯୬୦ = ୧୦୦ | ଖାଉଟୀ ମୂଲ୍ୟସୂଚୀ ୧୯୮୨ରୁ ୧୯୬୦କୁ ପରିବର୍ତ୍ତନ | ପାର୍ଥକ୍ୟ (ପଏଣ୍ଟରେ) |
|---|---|---|---|---|
| ହାରାହାରି ମାନ | | | ପରିବର୍ତ୍ତନ ପାଇଁ ଗୁଣନିୟକ | |
| ୧୯୮୨ | ୧୦୦ | ୪୭୫ | ୪.୭୫ | |
| ୧୯୮୫ | | | | |
| ଜାନୁଆରୀ | ୧୧୯ | ୫୮୮ | ୫୬୫ | - ୨୩ |
| ଫେବୃଆରୀ | ୧୧୯ | ୫୮୫ | ୫୬୫ | - ୨୦ |
| ମାର୍ଚ୍ଚ | ୧୨୦ | ୫୮୬ | ୫୭୦ | - ୧୬ |
| ଏପ୍ରିଲ | ୧୨୨ | ୫୯୪ | ୫୭୯ | - ୧୫ |
| ମଇ | ୧୨୩ | ୬୦୦ | ୫୮୪ | - ୧୪ |
| ଜୁନ୍ | ୧୨୪ | ୬୦୬ | ୫୮୯ | - ୧୭ |
| ଜୁଲାଇ | ୧୨୬ | ୬୧୫ | ୫୯୮ | - ୧୭ |
| ଅଗଷ୍ଟ | ୧୨୬ | ୬୧୮ | ୫୯୮ | - ୨୦ |
| ସେପ୍ଟେମ୍ବର | ୧୨୬ | ୬୧୯ | ୫୯୮ | - ୨୧ |
| ଅକ୍ଟୋବର | ୧୨୭ | ୬୨୫ | ୬୦୩ | - ୨୨ |
| ନଭେମ୍ବର | ୧୨୮ | ୬୩୦ | ୬୦୮ | - ୨୨ |
| ଡିସେମ୍ବର | ୧୨୮ | ୬୩୦ | ୬୦୮ | -୨୨ |
| | | | | - ୨୨୯ |

କିନ୍ତୁ ଶ୍ରମଜୀବୀ ଜନଗଣଙ୍କ ଆନ୍ଦୋଳନ ଫଳରେ ମୂଲ୍ୟସୂଚୀ ମୂଳବର୍ଷ (୧୯୮୨ରୁ ୧୯୬୦କୁ) ପରିବର୍ତ୍ତନ କ୍ଷେତ୍ରରେ ୪.୭୫ ପରିବର୍ତ୍ତେ ୪.୯୩କୁ ଗୁଣନୀୟକ ଭାବେ ଧରାଯାଉଛି ।

## ଖାଉଟି ମୂଲ୍ୟସୂଚୀ କ'ଣ ଏବଂ ଏହା କିଭଳି ନିର୍ଣ୍ଣୟ ହୁଏ ?

ଖାଉଟୀ ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ କେତେକ ଟେକ୍ନିକାଲ୍ (ବୈଷୟିକ ଜ୍ଞାନ) ବିଷୟ ନିଶ୍ଚିତ ଭାବେ ଜଡ଼ିତ, କିନ୍ତୁ ଏହାର ଅର୍ଥ ନୁହେଁ ଯେ ଏହାକୁ ଶ୍ରମିକମାନେ ବୁଝିପାରିବେ ନାହିଁ । ବରଂ ଶ୍ରମିକମାନଙ୍କୁ ଏହା ସମ୍ପର୍କରେ ସଚେତନ କରିପାରିଲେ ମୂଲ୍ୟସୂଚୀ ନିର୍ଣ୍ଣୟରେ ହେଉଥିବା ହେରଫେରକୁ ଅଧିକ ଦକ୍ଷତାର ସହ ସାମନା କରାଯାଇ ପାରିବ ।

ଖାଉଟୀମାନେ ବ୍ୟବହାର କରୁଥିବା ଜିନିଷର ମୂଲ୍ୟରେ ପ୍ରତିମାସ ଅଥବା ପ୍ରତିବର୍ଷ ଯେଉଁ ପରିବର୍ତ୍ତନ ଘଟେ, ତାହା ଖାଉଟୀ ମୂଲ୍ୟସୂଚୀ ମଧଦେଇ ପରିଲକ୍ଷିତ ହୋଇଥାଏ । ଭଲଭାବେ ବୁଝିବା ପାଇଁ ଏହି ପରିବର୍ତ୍ତନକୁ ଶତକଡ଼ା ହାର ମଧଦେଇ ପ୍ରକାଶ କରାଯାଇଥାଏ ।

ସମାଜର ବିଭିନ୍ନ ସ୍ତରର ଜନଗଣଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକାରର ମୂଲ୍ୟସୂଚୀ ନିର୍ଦ୍ଧାରିତ ହୋଇଥାଏ । ଉଦାହରଣ ସ୍ୱରୁପ, ଶ୍ରମିକଶ୍ରେଣୀ, ମଧ୍ୟବିତ୍ତଶ୍ରେଣୀ ଏବଂ କୃଷିଶ୍ରମିକଙ୍କ ପାଇଁ ଭିନ୍ନ ଭିନ୍ନ ପ୍ରକାରର ମୂଲ୍ୟସୂଚୀ ରହିଛି ।

ବିଭିନ୍ନ ଦ୍ରବ୍ୟମୂଲ୍ୟର ତୁଳନା ପାଇଁ ଖାଉଟୀମାନେ ବ୍ୟବହାର କରୁଥିବା ଜିନିଷପତ୍ର ଗୁଡ଼ିକ ମଧ୍ୟରୁ ନିର୍ଦ୍ଦିଷ୍ଟ ଦ୍ରବ୍ୟ/ଜିନିଷ ସ୍ଥିରିକୃତ ହୋଇଥାଏ । ଏହାକୁ ''ଜିନିଷପତ୍ର ଓ ସେବାର ଗଣ୍ଡିଲି (Basket of goods and Services) କୁହାଯାଏ । ଉଦାହରଣ ସ୍ୱରୂପ, ୧୯୬୦ ମସିହା ମୂଲ୍ୟସୂଚୀ (୧୯୬୦ = ୧୦୦) ଅନୁଯାୟୀ ୧୯୮୫ ମସିହା ମଇ ମାସରେ ଖାଉଟି ମୂଲ୍ୟସୂଚୀ ୬୦୦ ହୋଇଛି । ଏହା ଅର୍ଥ ହେଉଛି ୧୯୬୦ ମସିହା ତୁଳନାରେ ବିଭିନ୍ନ ଜିନଷପତ୍ର (ଜିନିଷପତ୍ର ଓ ସେବାର ଗଣ୍ଡିଲି) ର ମୂଲ୍ୟ ୬ଗୁଣରୁ ଅଧିକ ବୃଦ୍ଧି ପାଇଛି । ଅବଶ୍ୟ ଏହାର ଅର୍ଥନୁହେଁ ଯେ ବ୍ୟବହାର ଯୋଗ୍ୟ ପ୍ରତ୍ୟେକଟି ଜିନିଷର ମୂଲ୍ୟ ୬ଗୁଣ ବୃଦ୍ଧି ପାଉଛି । ହୁଏତ କେତେଗୁଡ଼ିଏ ଜିନିଷର ମୂଲ୍ୟ ୬ଗୁଣରୁ କମ୍ ବଢ଼ିଛି । କିନ୍ତୁ ମୂଲ୍ୟସୂଚୀ ନିର୍ଦ୍ଧାରଣରେ କେବଳ ସାଧାରଣଭାବେ ହାରାହାରି ହିସାବ କରିବସିବା ଠିକ୍

ହେବନାହିଁ । କାରଣ, ପ୍ରତ୍ୟେକଟି ଜିନିଷ ମଣିଷ ସମାନଭାବେ ଆବଶ୍ୟକ କରେନାହିଁ । ସର୍ଭେରୁ ଜଣାଯାଇଛି ଯେ ଜଣେ ଗରିବ ଲୋକ ତାର ଆୟର ଅଧିକାଂଶ ଖାଦ୍ୟପେୟ ଏବଂ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଦ୍ରବ୍ୟ ବାବଦରେ ଓ ଖୁବ୍ କମ୍ ଅଂଶ ଆମୋଦ ପ୍ରମୋଦରେ ବ୍ୟୟ କରିଥାଏ । ତେଣୁ ବ୍ୟବହାରରେ ଆସୁଥିବା ସମସ୍ତ ଜିନିଷପତ୍ର (ସ୍ଥିରିକୃତ ହୋଇଥିବା)ର ଗୁରୁତ୍ୱ ଦୃଷ୍ଟିରୁ ପ୍ରତ୍ୟେକଟି ଜିନିଷର ଗୁରୁତ୍ୱ ବା ପ୍ରାଧାନ୍ୟ **( Weightage)** ସ୍ଥିର ହୋଇଥାଏ । ତେଣୁ ''ଜିନିଷପତ୍ର ଓ ସେବାର ଗଣ୍ଠିଲି'' ମଧ୍ୟରୁ ପ୍ରତ୍ୟେକଟି ଜିନିଷର ଗୁରୁତ୍ୱ ବା ପ୍ରାଧାନ୍ୟ **(Weightage)** ସ୍ଥିରହୋଇଥାଏ । ତେଣୁ ''ଜିନିଷପତ୍ର ଓ ସେବାର ଗଣ୍ଠିଲି'' ମଧ୍ୟରୁ ପ୍ରତ୍ୟେକଟି ଜିନିଷର ଗୁରୁତ୍ୱ ବା ପ୍ରାଧାନ୍ୟ **(weightage)** ସ୍ଥିର କରିବା ଦରକାର । ତେଣୁ ''ଜିନିଷପତ୍ର ଓ ସେବାର ଗଣ୍ଠିଲି'' **(Basket of goods and services )** ମଧ୍ୟରୁ ଏକ ନିର୍ଦ୍ଦିଷ୍ଟ ଦ୍ରବ୍ୟର ଶତକଡ଼ା ବ୍ୟବହାରକୁ ଗୁରୁତ୍ୱ ବା ପ୍ରାଧାନ୍ୟ ବା **Weightage** କୁହାଯାଏ **(Weightage is a percentage Consumption of a particular item in the total Basket of goods and Services.)**

## ପ୍ରତ୍ୟେକଟି ବ୍ୟବହୃତ ଦ୍ରବ୍ୟ ବା ଜିନିଷପତ୍ରର ପ୍ରାଧାନ୍ୟ ବା ଗୁରୁତ୍ୱ (Weightage) କିଭଳି ନିର୍ଣ୍ଣୟ ହୁଏ ?

ପାରିବାରିକ ବଜେଟ୍ ଅନୁଧ୍ୟାନ **(Family Budget Studies)** ହେଉଥିବା ଯେକୌଣସି ଏକ କେନ୍ଦ୍ରରେ ଯେକୌଣସି ଏକ ଦ୍ରବ୍ୟକୁ ନିଆଯାଉ । ଉଦାହରଣ ସ୍ୱରୂପ ଆମକୁ ରାଉରକେଲା ଶିଳ୍ପ କେନ୍ଦ୍ରରେ ଚାଉଳର ପ୍ରାଧାନ୍ୟ ବା ଗୁରୁତ୍ୱ ନିର୍ଣ୍ଣୟ କରିବାକୁ ପଡ଼ିବ ।

ପ୍ରଥମେ ଏଠାରେ ପାରିବାରିକ ସର୍ଭେ କରି ଜାଣିବାକୁ ପଡ଼ିବ ଯେ ହାରାହାରି ଗୋଟିଏ ଶ୍ରମିକ ପରିବାରରେ ମାସିକ ଚାଉଳ କେତେ ଖର୍ଚ୍ଚ ହେଉଛି ଏବଂ ପରିବାରର ହାରାହାରି ମାସିକ ଖର୍ଚ୍ଚ କେତେ ହେଉଛି । ଧରି ନିଆଯାଉ ଯେ ମାସିକ ୧୦ କି.ଗ୍ରା. ଚାଉଳ ଖର୍ଚ୍ଚ ହେଉଛି । ଚାଉଳର ଦାମ୍ କି.ଗ୍ରା. ପିଛା ୧୨ ଟଙ୍କା ହିସାବରେ ଏ ବାବଦରେ ମାସକୁ ଖର୍ଚ୍ଚ ହେଲା ୧୦ x ୧୨ ଟଙ୍କା = ୧୨୦ ଟଙ୍କା । (ଚାଉଳର ହାରାହାରି ମୂଲ୍ୟ କିଭଳି ନିର୍ଣ୍ଣୟ ହେବ ତାହା ଅନ୍ୟତ୍ର ଦର୍ଶାଯାଇଛି ।) ଯଦି ସର୍ଭେ କରାଯାଇଥିବା ଶ୍ରମିକ ପରିବାରମାନଙ୍କର ହାରାହାରି ମାସିକ ଖର୍ଚ୍ଚ ୧୬୦୦ ଟଙ୍କା ହେଉଥିବ ତେବେ ରାଉରକେଲା ସହରରେ ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ଚାଉଳର ପ୍ରାଧାନ୍ୟ ବା ଗୁରୁତ୍ୱ ହେଉଛି

୧୨୦ ÷ ୧୬୦୦ x ୧୦୦ = ୭.୫%

ଅର୍ଥାତ୍, କୌଣସି ଦ୍ରବ୍ୟର ପ୍ରାଧାନ୍ୟ **(Weightage)** =

$$\frac{\text{ସେହି ଦ୍ରବ୍ୟ ବାବଦ ମାସିକ ଖର୍ଚ୍ଚ}}{\text{ପାରିବାରିକ ମାସିକ ଖର୍ଚ୍ଚ}} \times ୧୦୦$$

ଏହିପରି ଭାବରେ ଶ୍ରମିକ ପରିବାରଗୁଡ଼ିକ ବ୍ୟବହାର କରୁଥିବା ପ୍ରତ୍ୟେକଟି ଜିନିଷର ପ୍ରାଧାନ୍ୟ ବା ଗୁରୁତ୍ୱ ନିର୍ଣ୍ଣୟ କରିବାକୁ ହୁଏ ।

ଶ୍ରମିକମାନେ ଅଥବା କୌଣସି ନିର୍ଦ୍ଦିଷ୍ଟ ସାମାଜିକ ଗୋଷ୍ଠୀ କେଉଁ କେଉଁ ଦ୍ରବ୍ୟକୁ କେତେ ପରିମାଣରେ ବ୍ୟବହାର କରୁଛନ୍ତି ଏବଂ ତାହା ମଧ୍ୟରୁ ପ୍ରତ୍ୟେକଟି ଦ୍ରବ୍ୟର ଗୁରୁତ୍ୱ ବା "ପ୍ରାଧାନ୍ୟ" କେତେ ତାହା ଜାଣିବା ପାଇଁ ବିଭିନ୍ନ କେନ୍ଦ୍ରରେ ପାରିବାରିକ ବଜେଟ୍ **(Family Budget)** ଅନୁଧ୍ୟାନ କରିବାକୁ ପଡ଼େ ଏବ ତାହା ମୂଲ୍ୟସୂଚୀ ନିର୍ଦ୍ଧାରଣରେ ବ୍ୟବହୃତ ହୁଏ । ସାଧାରଣତଃ ଯେଉଁ ବର୍ଷଟିରେ ଦରଦାମ ଅପେକ୍ଷାକୃତ ସ୍ଥିର ରହେ ଅଥବା ଦ୍ରବ୍ୟ ମୂଲ୍ୟ ବିଶେଷ ଏପଟ ସେପଟ ହୁଏନାହିଁ ତାକୁ ସାଧାରଣ ବର୍ଷ **(Normal Year)** ବୋଲି ଧରାଯାଏ । ସେହିଭଳି ଏକ ବର୍ଷରେ ପାରିବାରିକ ବଜେଟ୍ ଅନୁଧ୍ୟାନ କରାଯାଇଥାଏ ଏବଂ ତାହା ମୂଲ୍ୟସୂଚୀର ମୂଳବର୍ଷ ନିର୍ଦ୍ଧାରଣ କରିବାରେ ବ୍ୟବହୃତ ହୁଏ ।

## ପାରିବାରିକ ବଜେଟ୍ ସର୍ଭେ

ପ୍ରଥମେ ସର୍ଭେ କରିବା ପାଇଁ କେନ୍ଦ୍ରଗୁଡ଼ିକ ସ୍ଥିର କରାଯାଏ । କୌଣସି କେନ୍ଦ୍ର ପ୍ରତ୍ୟେକଟି ଶ୍ରମିକଶ୍ରେଣୀ ପରିବାରର ବଜେଟ୍ ସମ୍ପର୍କରେ ଅନୁଧ୍ୟାନ କରିବା ସମ୍ଭବପର ନୁହେଁ । ତେଣୁ ସାମ୍ପଲ ସର୍ଭେ କରାଯାଏ । ଯେଉଁ କେନ୍ଦ୍ରର ପାରିବାରିକ ବଜେଟ୍ ତିଆରି ହେବା କଥା ସେଠାରେ ଥିବା ବିଭିନ୍ନ କଳ କାରଖାନା, ଖଣି ଖାଦାନ ଅଞ୍ଚଳରେ କାମ କରୁଥିବା ଶ୍ରମିକମାନଙ୍କ ଲିଷ୍ଟ ଶ୍ରମ ବିଭାଗ ସଂଗ୍ରହ କରି ସେଥିରୁ କେତେକ ପରିବାରକୁ ମନୋନୀତ କରାଯାଏ । ସେହି ପରିବାର ଗୁଡ଼ିକ ବର୍ଷକ ମଧ୍ୟରେ କେଉଁ କେଉଁ ଜିନିଷ କେତେ ଲେଖାଏଁ କିଣୁଛନ୍ତି, କିଭଳି ପ୍ରକାର ଖର୍ଚ୍ଚ କରୁଛନ୍ତି ତାହା ଅନୁଧ୍ୟାନ କରାଯାଏ ଏହାକୁ ସାମ୍ପଲ ସର୍ଭେ କୁହାଯାଏ । ଶ୍ରମିକ ପରିବାରର ବ୍ୟବହାର କରୁଥିବା ସମସ୍ତ ଜିନିଷ ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ସାଧାରଣତଃ ବର୍ଷେ ସମୟ ଲାଗେ । କାରଣ ବର୍ଷର ବିଭିନ୍ନ ସମୟରେ ହିଁ ବିଭିନ୍ନ ଜିନିଷ ବ୍ୟବହାର ହୋଇଥାଏ । ଋତୁ ପରିବର୍ତ୍ତନ ଯୋଗୁଁ ଏବଂ

ଘଟିଥାଏ । ତେଣୁ ବର୍ଷରେ ଅତି କମ୍‌ରେ ୪ ଥର ତଥ୍ୟ ସଂଗ୍ରହ କରାଯାଏ । ଅବଶ୍ୟ ବୈଷୟିକ ବିଶେଷଜ୍ଞମାନଙ୍କ ପରାମର୍ଶ ଅନୁଯାୟୀ ଏହା ପ୍ରତି ମାସରେ ସଂଗୃହୀତ ହେବା ଆବଶ୍ୟକ । ପାରିବାରିକ ବଜେଟ୍ ଅନୁଧ୍ୟାନ ମଧ୍ୟ ଦେଇ ପରିବାରର ସଦସ୍ୟ ସଂଖ୍ୟା, ଆୟ କରୁଥିବା ଲୋକଙ୍କ ସଂଖ୍ୟା, ଆୟ ବ୍ୟୟ ସମ୍ପର୍କରେ ତଥ୍ୟ ମିଳେ । ପରିବାରଟି ଯେଉଁ ସମସ୍ତ ଦ୍ରବ୍ୟ ଜିନିଷପତ୍ର ବ୍ୟବହାର କରିଥାଏ ତାକୁ ମୋଟାମୋଟି ଭାବେ ୫ ଭାଗରେ ବିଭକ୍ତ କରାଯାଏ ।

| | |
|---|---|
| ୧. ଖାଦ୍ୟ : | ଚାଉଳ, ଗହମ, ତୈଳବୀଜ, ଚିନି, ଦୁଧ, ମାଂସ, ମାଛ, ମସଲା, ତେଲ ଇତ୍ୟାଦି । |
| ୨. ଜାଳେଣୀ ଓ ଆଲୋକ : | କିରୋସିନି ତେଲ, ଶୁଖିଲା କାଠ, କୋଇଲା, ଦିଆସିଲି, ବିଦ୍ୟୁତ୍, ଗ୍ୟାସ୍ ଇତ୍ୟାଦି । |
| ୩. ଲୁଗାପଟା ଓ ଜୋତା : | ଧୋତି, ଶାଢ଼ୀ, ସାର୍ଟ, ପ୍ୟାଣ୍ଟ, ବିଛଣା, ଗରମ ପୋଷାକ, ଚପଲ, ଜୋତା ଇତ୍ୟାଦି । |
| ୪. ବାସଗୃହ : | ବିଭିନ୍ନ ସମୟରେ ଦିଆଯାଉଥିବା ଘରଭଡ଼ା । |
| ୫. ବିବିଧ ଜିନିଷ : | ପାନ, ଗୁଆ, ଲୁଗାଧୁଆ ସାବୁନ, କେଶରେ ଲଗାଇବା ତେଲ, ଧୋବା ଖର୍ଚ୍ଚ, ବସ ଓ ଟ୍ରେନ୍‌ରେ ଯାତାୟତ ଖର୍ଚ୍ଚ, ଡାକ୍ତର ଖର୍ଚ୍ଚ, ଶିକ୍ଷା, ଖବରକାଗଜ ଇତ୍ୟାଦି । |

ସର୍ଭେରୁ ଜଣାଯାଇଛି ଯେ ଆମ ଦେଶରେ ଲୋକେ ପ୍ରାୟ ୬୦୦ରୁ ଅଧିକ କିସମର ଜିନିଷପତ୍ର/ ଦ୍ରବ୍ୟ ବ୍ୟବହାର କରନ୍ତି । ତେଣୁ ବ୍ୟବହୃତ ହେଉଥିବା ଜିନିଷ ଗୁଡ଼ିକ ମଧ୍ୟରୁ ମୁଖ୍ୟତଃ କେତେଗୁଡ଼ିଏ ଜିନିଷକୁ ମନୋନୀତ କରାଯାଏ ଏବଂ କମ ପ୍ରାଧାନ୍ୟ ଥିବା **(Weightage)** ଜିନିଷକୁ ଅଧିକ ପ୍ରାଧାନ୍ୟ ଥିବା ଜିନିଷ ସହ ମିଶାଇ ଦିଆଯାଏ । ଏହାକୁ **Imputation** କୁହାଯାଏ । ଅବଶ୍ୟ ଏ କ୍ଷେତ୍ରରେ ସତର୍କ ଦୃଷ୍ଟି ନଦେଇ ମୂଲ୍ୟସୂଚୀ ନିର୍ଦ୍ଧାରଣ ଠିକ୍ ଭାବେ ହୋଇପାରେ ନାହିଁ । ଉଦାହରଣ ସ୍ୱରୂପ, ଉଭୟ କଞ୍ଚାଲଙ୍କା ଓ ଶୁଖିଲା ଲଙ୍କା ଖାଉଟୀମାନେ ବ୍ୟବହାର କରି ଥାଆନ୍ତି । କିନ୍ତୁ କଞ୍ଚାଲଙ୍କା ଦାମ୍ ଅପେକ୍ଷା ଶୁଖିଲା ଲଙ୍କା ଦାମ୍ ଅଧିକ । ଏ କ୍ଷେତ୍ରରେ ''ମସଲା''ର ପ୍ରାଧାନ୍ୟ ନିର୍ଣ୍ଣୟ କଲାବେଳେ କେବଳ କଞ୍ଚାଲଙ୍କା ଦାମ୍ ନେଇ ହିସାବ କଲେ ମସଲାର ପ୍ରାଧାନ୍ୟ କମିଯିବ । ଏହିଭଳି ଭାବେ ବିଭିନ୍ନ ଜିନିଷ

ମନୋନୀତ କରାଯାଏ ଏବଂ ସେହି ସମସ୍ତ ଜିନିଷର 'ପ୍ରାଧାନ୍ୟ'ର ସମଷ୍ଟି ୧୦୦ ହୁଏ, ଉଦାହରଣ ସ୍ୱରୂପ ଖାଦ୍ୟ ସାମଗ୍ରୀରେ ଚାଉଳ, ଗହମ, ତୈଳବୀଜ, ଚିନି, ଦୁଧ, ମାଂସ, ମାଛ, ମସଲା, ତେଲ ଇତ୍ୟାଦି ଅନ୍ତର୍ଭୁକ୍ତ କରାଯାଇଛି । କୌଣସି ନିର୍ଦ୍ଦିଷ୍ଟ ଜିନିଷର ପ୍ରାଧାନ୍ୟ ବା ଗୁରୁତ୍ୱ **(Weightage)** କିଭଳି ନିର୍ଣ୍ଣୟ କରାଯାଏ ତାହା ପୂର୍ବରୁ ଦର୍ଶାଯାଉଛି । ସେହି ପଦ୍ଧତି ଅନୁସରଣ କରି ଧରିନିଅ ଆମେ ଜାଣିଲେ ଯେ,

| | |
|---|---|
| ଚାଉଳର ଗୁରୁତ୍ୱ | ୭.୫% ଭାଗ |
| ଗହମର ଗୁରୁତ୍ୱ | ୧୨.୦% ଭାଗ |
| ତେଲର ଗୁରୁତ୍ୱ | ୫.୦% ଭାଗ |
| ତୈଳବୀଜର ଗୁରୁତ୍ୱ | ୫.୦% ଭାଗ |
| ଚିନିର ଗୁରୁତ୍ୱ | ୩.୦% ଭାଗ |
| ଦୁଧର ଗୁରୁତ୍ୱ | ୫.୦% ଭାଗ |
| ମାଂସର ଗୁରୁତ୍ୱ | ୩.୫% ଭାଗ |
| ମାଛର ଗୁରୁତ୍ୱ | ୫.୦% ଭାଗ |
| ମସଲାର ଗୁରୁତ୍ୱ | ୨.୦% ଭାଗ |
| ପନିପରିବାର ଗୁରୁତ୍ୱ | ୧୩.୦% ଭାଗ |
| **ମୋଟ** | **୬୧.୦% ଭାଗ** |

ଅର୍ଥାତ୍ ପାରିବାରିକ ବଜେଟ୍ ମଧ୍ୟରେ ମୋଟ ଖାଦ୍ୟ ଗ୍ରୁପ୍‌ର ଗୁରୁତ୍ୱ **(Weightage)** ହେଉଛି ୬୧% । ଠିକ୍ ସେହିପରି ପାରିବାରିକ ବଜେଟ୍‌ର ସମସ୍ତ ଗ୍ରୁପ୍‌ରୁ ପ୍ରାଧାନ୍ୟ ବା ଗୁରୁତ୍ୱ ନିର୍ଣ୍ଣୟ କରିବାକୁ ହେବ, ଯାହାର ସମଷ୍ଟି ନିଶ୍ଚିତ ଭାବେ ୧୦୦ ହେବ ।

ଉଦାହରଣ ସ୍ୱରୂପ -

| | |
|---|---|
| ଖାଦ୍ୟ ଗ୍ରୁପ୍ | ୬୧% |
| ଜାଳେଣୀ ଓ ଆଲୋକ ଗ୍ରୁପ୍ | ୮.୮% |
| ଘରଭଡ଼ା ଗ୍ରୁପ୍ | ୬.୪% |
| ଲୁଗାପଟା ଇତ୍ୟାଦି ଗ୍ରୁପ୍ | ୧୦.୮% |
| ବିବିଧ ଖର୍ଚ୍ଚ ଗ୍ରୁପ୍ | ୧୩.୦% |
| **ମୋଟ** | ୧୦୦ |

# ଦ୍ରବ୍ୟ ମୂଲ୍ୟ ସଂଗ୍ରହ ବ୍ୟବସ୍ଥା

ପରିବାର ବଜେଟ୍ ଅନୁଧାନ ଭିତ୍ତିରେ ଏକ ଦ୍ରବ୍ୟ ମୂଲ୍ୟ ସଂଗ୍ରହ ତାଲିକା ସ୍ଥିର କରାଯାଏ । ଏଥିରେ ଦ୍ରବ୍ୟ/ ଜିନିଷର ନାମ, ଆବଶ୍ୟକସ୍ଥଳେ ତାର କିସମ ବା ଗ୍ରେଡ୍, ନିର୍ଦ୍ଦିଷ୍ଟ ପରିମାଣ, ଆଦି ଅନ୍ତର୍ଭୁକ୍ତ । ଏହାପରେ ଶ୍ରମିକମାନେ ମୁଖ୍ୟତଃ ଯେଉଁ ବଜାରରୁ ଜିନିଷପତ୍ର କିଣନ୍ତି ତାହା ମନୋନୀତ କରାଯାଏ । ଗୋଟିଏ ବଜାରର ୨/୩ଟି ଦୋକାନରୁ ଦ୍ରବ୍ୟ ମୂଲ୍ୟ ସଂଗ୍ରହ ହୁଏ । ଜିନିଷପତ୍ରର ଦାମ୍‌ରେ ପରିବର୍ତ୍ତନ ଘଟୁଥିବାରୁ ପ୍ରତ୍ୟେକ ସପ୍ତାହରେ ଦ୍ରବ୍ୟମୂଲ୍ୟ ସଂଗ୍ରହ ହୁଏ । ସାଧାରଣତଃ ଶ୍ରମିକମାନେ ଅଧିକ ଜିନିଷପତ୍ର କିଣୁଥିବା ଦିନଟିକୁ ଦ୍ରବ୍ୟମୂଲ୍ୟ ସଂଗ୍ରହ ପାଇଁ ସ୍ଥିର କରାଯାଏ । ଯେଉଁସବୁ ଜିନିଷପତ୍ର (ପନିପରିବା, ମାଛ, ମାଂସ ଇତ୍ୟାଦି) ସକାଳ ଓ ସନ୍ଧ୍ୟା ମଧ୍ୟରେ ଅଥବା ଖୁବ୍ ଶୀଘ୍ର ନଷ୍ଟ ହୋଇଯିବାର ଆଶଙ୍କା ଥାଏ ସେଗୁଡ଼ିକ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର ହୁଏ ।

ଜିନିଷପତ୍ରର ମୂଲ୍ୟ ପାଇକାରୀ ଦୋକାନରୁ ସଂଗୃହୀତ ନହୋଇ ଖୁଚୁରା ଦୋକାନରୁ ସଂଗୃହୀତ ହୁଏ । ଜୀରା, କଞ୍ଚାଲଙ୍କା ଭଳି କେତେକ ଜିନିଷର ମୂଲ୍ୟ କିଲୋଗ୍ରାମ୍ ଦରରେ ସଂଗୃହୀତ ହେଉଥିବାରୁ ସେଥିରେ ଦ୍ରବ୍ୟମୂଲ୍ୟ ସଠିକ୍ ଭାବେ ପ୍ରତିଫଳନ ହୁଏନାହିଁ । ଆଉ କେତେକ କ୍ଷେତ୍ରରେ ବିଶେଷକରି ଲୁଗାପଟା କ୍ଷେତ୍ରରେ ସ୍ଥିରୀକୃତ ହୋଇଥିବା ନିର୍ଦ୍ଦିଷ୍ଟ ମାନର ବସ୍ତ୍ର ଦୋକାନରେ ନଥିଲେ ନିମ୍ନମାନର ବସ୍ତ୍ରର ମୂଲ୍ୟକୁ ହିସାବକୁ ନେଇଥାନ୍ତି, ଏହାଫଳରେ ମୂଲ୍ୟସୂଚୀରେ ହ୍ରାସ ଘଟେ । ଏଭଳି କ୍ଷେତ୍ରରେ ସମାନ ମାନର ଜିନିଷର ମୂଲ୍ୟକୁ ହିସାବକୁ ନେବା କଥା । ଏହାକୁ ପ୍ରତିବଦଳ (Substitution) କୁହାଯାଏ । ବସ୍ତ୍ର କ୍ଷେତ୍ରରେ ଏହା ବହୁ ସମୟରେ ଘଟିଥାଏ । କିନ୍ତୁ ଏ କ୍ଷେତ୍ରରେ ରଙ୍ଗ, ମାନ, ସ୍ୱାଦ ଆଦିକୁ ଦେଖିବାକୁ ହୋଇଥାଏ । କେବଳ ମୂଲ୍ୟକୁ ଧରି ବସିଲେ ହେବନାହିଁ । ବହୁ ସମୟରେ ସ୍ଥିରୀକୃତ ହୋଇଥିବା ଜିନିଷ ବଜାରକୁ ବହୁଦିନ ଧରି ଆସେନାହିଁ । ଏହା ବଦଳରେ ଆଉ କେତେକ ଜିନିଷ ଆସେ । ଏଭଳି କ୍ଷେତ୍ରରେ ନୂତନ ଜିନିଷର ମୂଲ୍ୟ, ଲୋକଙ୍କ ନିକଟରେ ଏହାର କାଟତି ଇତ୍ୟାଦିକୁ ଲକ୍ଷ୍ୟକରି ସ୍ଥିରୀକୃତ ହୋଇଥିବା ଜିନିଷ ସହ ତୁଳନା କରାଯାଏ । ତା'ପରେ ଆବଶ୍ୟକ ହେଲେ ପୂର୍ବରୁ ସ୍ଥିରୀକୃତ ହୋଇଥିବା ଜିନିଷ ବଦଳରେ ଏହାକୁ ଗ୍ରହଣ କରାଯାଇପାରେ । ଏହାକୁ Splicing କୁହାଯାଏ । ଏହି କୌଶଳକୁ ସଠିକ୍ ଭାବେ ପ୍ରୟୋଗ ନକଲେ ମୂଲ୍ୟସୂଚୀ ହିସାବରେ ଭୁଲ ଦେଖାଦେବ ।

ମୂଲ୍ୟସୂଚୀ ନିର୍ଦ୍ଧାରଣରେ ଦ୍ରବ୍ୟମୂଲ୍ୟ ସଂଗ୍ରହ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦଖଲ କରିଥିବା ଦୃଷ୍ଟିରୁ ଏ ଦିଗରେ ଅଧିକ ସତର୍କ ଦୃଷ୍ଟି ଦେବାକଥା । କୌଣସି ଜିନିଷ ସ୍ଥାନରେ ତା'ର ଠିକ୍ ପ୍ରତିବଦଳ ନଘଟିଲେ ମୂଲ୍ୟସୂଚୀ ଉପରେ ତାର କୁପ୍ରଭାବ ପଡ଼ିଥାଏ ।

ବହୁ ସମୟରେ ଲୁକ୍କାୟିତ ଭାବରେ ଦ୍ରବ୍ୟମୂଲ୍ୟ ବୃଦ୍ଧି ଘଟିଥାଏ ଯାହାକି ବର୍ତ୍ତମାନ ଅନୁସୃତ ହେଉଥିବା ଦ୍ରବ୍ୟମୂଲ୍ୟ ନିରୂପଣ ପଦ୍ଧତିରେ ପ୍ରତିଫଳିତ ହୁଏନାହିଁ। ଯଦିଓ ଯେଉଁମାନେ ଦ୍ରବ୍ୟମୂଲ୍ୟ ସଂଗ୍ରହ କରୁଛନ୍ତି ସେମାନଙ୍କୁ ସଠିକ୍ ଭାବେ ଟ୍ରେନିଂ ଦେବା ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ତଥାପି ଏହା କେବଳ ଟ୍ରେନିଂ ଜନିତ ସମସ୍ୟା ନୁହେଁ । ଦ୍ରବ୍ୟମୂଲ୍ୟ ସଂଗ୍ରହ କ୍ଷେତ୍ରରେ କେତେକ ଅଣବୈଜ୍ଞାନିକ ସମ୍ମତ ପନ୍ଥା ଅନୁସରଣ ସାଙ୍ଗକୁ ଦୁର୍ନୀତି ଫଳରେ ମୂଲ୍ୟସୂଚୀ ହ୍ରାସ ପାଏ । ମୂଲ୍ୟସୂଚୀକୁ ନିମ୍ନକରି ଦର୍ଶାଇବା ପାଇଁ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା ମଧ୍ୟରେ ପନ୍ଥା ବା କୌଶଳର ଆଦୌ ଅଭାବ ନାହିଁ।

## ମୂଲ୍ୟସୂଚୀ ନିର୍ଦ୍ଧାରଣ

ପ୍ରତ୍ୟେକ ସପ୍ତାହରେ ପ୍ରତ୍ୟେକଟି ଜିନିଷର ମୂଲ୍ୟ ସ୍ଥିରୀକୃତ ହୋଇଥିବା ବଜାରର ଦୋକାନମାନଙ୍କରୁ ସଂଗ୍ରହ କରାଯାଇ ହାରାହାରି ମାସିକ ଭିତ୍ତିରେ ଦ୍ରବ୍ୟମୂଲ୍ୟ ନିର୍ଣ୍ଣୟ କରାଯାଏ । ତଳେ ଏହାର ଏକ ଉଦାହରଣ ଦିଆଗଲା ।

### ଚାଉଳର ହାରାହାରି ମୂଲ୍ୟ (ଟଙ୍କାରେ)
### (ମଧ୍ୟମ କିସମ)

| | ବଜାର - ୧ | | ବଜାର - ୨ | |
|---|---|---|---|---|
| | ଦୋକାନ - ୧ | ଦୋକାନ - ୨ | ଦୋକାନ - ୩ | ଦୋକାନ - ୪ |
| ୧ମ ସପ୍ତାହ | ୧୬.୦୦ | ୧୬.୨୦ | ୧୬.୪୦ | ୧୬.୮୦ |
| ୨ୟ ସପ୍ତାହ | ୧୬.୫୦ | ୧୬.୬୦ | ୧୭.୫୦ | ୧୬.୫୦ |
| ୩ୟ ସପ୍ତାହ | ୧୬.୪୦ | ୧୬.୯୦ | ୧୬.୮୦ | ୧୬.୬୦ |
| ୪ର୍ଥ ସପ୍ତାହ | ୧୬.୩୦ | ୧୬.୩୦ | ୧୭.୩୦ | ୧୬.୫୦ |

ହାରାହାରି ମୂଲ୍ୟ— — — — — — — — — — — — — — — — ୧୬.୬୦

ତେଣୁ ନିର୍ଦ୍ଦିଷ୍ଟ ମାସରେ ଚାଉଳ କିଲୋଗ୍ରାମର ମୂଲ୍ୟ ୧୬ ଟଙ୍କା ୬୦ ପଇସା ଧରିବାକୁ ହେବ ।

ମୂଳ ବର୍ଷରେ ଚାଉଳର ମୂଲ୍ୟ ଟ. ୫.୦୦ ପଇସା ଥିଲା ବୋଲି ଧରାଯାଉ । ତେଣୁ ଏହାକୁ ୧୦୦ ବୋଲି ଧରିବାକୁ ହେବ । ସେ ଦୃଷ୍ଟିରୁ ଉପରୋକ୍ତ ମାସ ପାଇଁ ଚାଉଳର ମୂଲ୍ୟସୂଚୀ ହେଲା -

୫ ଟଙ୍କା = ୧୦୦

ଟ. ୧୬.୬୦ = ୧୦୦ ÷ ୫ x ୧୬.୬୦ = ୩୩୨

ଅର୍ଥାତ୍, $\frac{\text{ନିର୍ଦ୍ଦିଷ୍ଟ ମାସରେ ଦ୍ରବ୍ୟର ମୂଲ୍ୟ}}{\text{ମୂଳବର୍ଷରେ ଦ୍ରବ୍ୟ ମୂଲ୍ୟ}}$ x ୧୦୦ = ଦ୍ରବ୍ୟର ମୂଲ୍ୟସୂଚୀ

କୌଣସି ଦ୍ରବ୍ୟର ମୂଲ୍ୟସୂଚୀକୁ "ମୂଲ୍ୟ ସମ୍ପର୍କୀତ" **(Price Relative)** କୁହାଯାଏ ।

ଏହିପରି ଭାବେ କୌଣସି ଏକ କେନ୍ଦ୍ରର ବିଭିନ୍ନ ଦ୍ରବ୍ୟର ମାସିକ ମୂଲ୍ୟସୂଚୀ ନିରୂପଣ କରାଯାଏ । ବିଭିନ୍ନ ଦ୍ରବ୍ୟର ମୂଲ୍ୟସୂଚୀ ଏବଂ ନିଜ ଗ୍ରୁପରେ ସେହି ଦ୍ରବ୍ୟର ପ୍ରାଧାନ୍ୟ ଉପରେ ନିର୍ଭର କରି ଗ୍ରୁପର ମୂଲ୍ୟସୂଚୀ ନିର୍ଣ୍ଣିତ ହୁଏ । ଏଠାରେ ଏହାର ଏକ ଉଦାହରଣ ଦିଆଗଲା ।

ମନେକର, ରାଉରକେଲା ସହରରେ ଖାଦ୍ୟ ଗ୍ରୁପ୍‌ରେ

| | | | |
|---|---|---|---|
| ଚାଉଳର ପ୍ରାଧାନ୍ୟ | ୭.୫% | ଚାଉଳର ମୂଲ୍ୟସୂଚୀ | ୩୩୨ |
| ଗହମର ପ୍ରାଧାନ୍ୟ | ୧୨% | ଗହମର ମୂଲ୍ୟସୂଚୀ | ୨୦୦ |
| ତେଲର ପ୍ରାଧାନ୍ୟ | ୫% | ତେଲର ମୂଲ୍ୟସୂଚୀ | ୫୦୦ |

........... ଇତ୍ୟାଦି ଇତ୍ୟାଦି ।

ଏ କ୍ଷେତ୍ରରେ ଖାଦ୍ୟଶସ୍ୟ ଗ୍ରୁପର ମୂଲ୍ୟସୂଚୀ ନିର୍ଣ୍ଣୟ କରିବାକୁ ହେଲେ ଏହି ଗ୍ରୁପ୍‌ରେ ଥିବା ପ୍ରତ୍ୟେକଟି ଦ୍ରବ୍ୟର ପ୍ରାଧାନ୍ୟକୁ ସେହି ଦ୍ରବ୍ୟର ମୂଲ୍ୟସୂଚୀରେ ଗୁଣି ଗୁଣଫଳକୁ ଗ୍ରୁପ୍‌ର ପ୍ରାଧାନ୍ୟ ଦ୍ୱାରା ଭାଗ କରିବାକୁ ହେବ । ଯାହା ଭାଗଫଳ ଆସିବ ତାହା ଖାଦ୍ୟ ଗ୍ରୁପ୍‌ର ମୂଲ୍ୟସୂଚୀ ବୋଲି ଧରିବାକୁ ହେବ । ଅର୍ଥାତ୍,

୭.୫ x ୩୩୨ + ୧୨ x ୨୦୦ + ୫ x ୫୦୦ + ...... (ଗ୍ରୁପ୍‌ର ଅନ୍ୟାନ୍ୟ ଜିନିଷର ପ୍ରାଧାନ୍ୟ x ତାହାର ମୂଲ୍ୟସୂଚୀ)

୭.୫ + ୧୨ + ୫ + ......... (ଏହି ଗ୍ରୁପ୍‌ରେ ଅନ୍ତର୍ଭୁକ୍ତ ଅନ୍ୟାନ୍ୟ ଦ୍ରବ୍ୟର ପ୍ରାଧାନ୍ୟ)

ହେଉଛି ଖାଦ୍ୟଶସ୍ୟ ଗ୍ରୁପ୍ ମୂଲ୍ୟସୂଚୀ ।

ଏହିପରି ଭାବେ ବିଭିନ୍ନ ଗ୍ରୁପ୍‌ର ଗୋଟିଏ ନିର୍ଦ୍ଦିଷ୍ଟ ମାସର ମୂଲ୍ୟସୂଚୀ ନିର୍ଣ୍ଣୟ କରିବାକୁ ହେବ । ଏହାପରେ ଠିକ୍ ସେହିପରି ଭାବରେ କୌଣସି ଏକ ନିର୍ଦ୍ଦିଷ୍ଟ କେନ୍ଦ୍ରର ଏକ ନିର୍ଦ୍ଦିଷ୍ଟ ମାସର ମୂଲ୍ୟସୂଚୀ ବାହାର କରିବାକୁ ହେବ । ଅର୍ଥାତ୍, କୌଣସି କେନ୍ଦ୍ରର କୌଣସି ଗୋଟିଏ ମାସର ସାଧାରଣ ମୂଲ୍ୟସୂଚୀ ସ୍ଥିର କରିବା ପାଇଁ ସେହି ମାସର ସମସ୍ତ ଦ୍ରବ୍ୟର ମୂଲ୍ୟସୂଚୀର ହାରାହାରି ପ୍ରାଧାନ୍ୟ **(Weightage Average)** ସ୍ଥିର କରିବାକୁ ପଡ଼ିଥାଏ । ପ୍ରତ୍ୟେକ ଜିନିଷର ଦ୍ରବ୍ୟ ମୂଲ୍ୟସୂଚୀକୁ "ପ୍ରାଧାନ୍ୟ" ସହ ଗୁଣି ସେ ସମସ୍ତଙ୍କର ସମଷ୍ଟିକୁ ୧୦୦, (ସମସ୍ତ ଗ୍ରୁପ୍‌ର ପ୍ରାଧାନ୍ୟର ସମଷ୍ଟି) ଦ୍ୱାରା ଭାଗକରି ଉପରୋକ୍ତ ମାସର ମୂଲ୍ୟସୂଚୀ ନିର୍ଦ୍ଧାରଣ କରାଯାଏ । ନିମ୍ନରେ ଏହାର ଏକ ଉଦାହରଣ ଦିଆଗଲା -

## ମୂଲ୍ୟସୂଚୀ ନିର୍ଦ୍ଧାରଣ ପଦ୍ଧତି

| ଗ୍ରୁପ୍ | ଗ୍ରୁପ୍ ପ୍ରାଧାନ୍ୟ (କ) | ଗ୍ରୁପ୍ ମୂଲ୍ୟସୂଚୀ (ଖ) | ଫଳାଫଳ (Product) କ x ଖ |
|---|---|---|---|
| ଖାଦ୍ୟ | ୬୧ | ୬୨୧.୬ | ୩୭୯୧୬ |
| ଜାଳେଣୀ ଓ ଆଲୋକ | ୮.୮ | ୫୮୪.୪ | ୫୧୪୪ |
| ଘରଭଡ଼ା | ୬.୪ | ୪୦୦.୦ | ୨୬୪୦ |
| ଲୁଗାପଟା ଇତ୍ୟାଦି | ୧୦.୮ | ୮୧୨.୦ | ୮୭୬୮ |
| ବିବିଧ ଖର୍ଚ୍ଚ | ୧୩.୦ | ୬୭୧.୨ | ୮୭୨୪ |
| | ୧୦୦ | | ୬୩୧୧୨ |
| | ମୂଲ୍ୟସୂଚୀ | | **୬୩୧.୦୦** |

ତେଣୁ ସେହି ନିର୍ଦ୍ଦିଷ୍ଟ ମାସର ହାରାହାରି ମୂଲ୍ୟସୂଚୀ ବା ଜେନେରାଲ ଇଣ୍ଡେକ୍ସ ୬୩୧ । ଏହିପରି ଭାବେ ୧୨ ମାସର ମୂଲ୍ୟସୂଚୀ ନେଇ ସାଧାରଣ ହାରାହାରି ପଦ୍ଧତିରେ ବାର୍ଷିକ ମୂଲ୍ୟସୂଚୀ ନିରୂପଣ କରାଯାଏ ।

ଠିକ୍ ସେହିପରି ଭାବେ ସର୍ବଭାରତୀୟ ସ୍ତରରେ ମୂଲ୍ୟସୂଚୀ ନିରୂପଣ କରାଯାଏ । ଏହାଛଡ଼ା ପ୍ରତ୍ୟେକଟି କେନ୍ଦ୍ରର ପ୍ରାଧାନ୍ୟ (**Weightage**) ସ୍ଥିର କରାଯାଏ । ମୂଲ୍ୟସୂଚୀ ନିର୍ଦ୍ଧାରଣ ପାଇଁ ସ୍ଥିରୀକୃତ ହୋଇଥିବା କେନ୍ଦ୍ରମାନଙ୍କରେ ମୋଟ ଶ୍ରମିକଙ୍କ ତୁଳନାରେ ନିର୍ଦ୍ଦିଷ୍ଟ କେନ୍ଦ୍ରର ପ୍ରାଧାନ୍ୟ ସ୍ଥିର ହୁଏ । ଏଠାରେ ଆଉ ଏକ ଉଦାହରଣ ନିଆଯାଉ ।

ମନେକର ଭୁବନେଶ୍ୱର ସହରର ଲୋକସଂଖ୍ୟା ୬ ଲକ୍ଷ । ଯେଉଁ ସମସ୍ତ କେନ୍ଦ୍ରକୁ ମୂଲ୍ୟସୂଚୀ ନିର୍ଦ୍ଧାରଣ ପାଇଁ ମନୋନୀତ କରାଯାଇଛି ସେ ସମସ୍ତ କେନ୍ଦ୍ରର ଶ୍ରମିକମାନଙ୍କ ସଂଖ୍ୟା ମନେକର ୩ କୋଟି । ତା'ହେଲେ ମୂଲ୍ୟସୂଚୀ ନିର୍ଦ୍ଧାରଣ କ୍ଷେତ୍ରରେ ଭୁବନେଶ୍ୱର ସହରର ପ୍ରାଧାନ୍ୟ ବା ଗୁରୁତ୍ୱ ହେଉଛି :

$$\text{୬ ଲକ୍ଷ} \div \text{୩ କୋଟି} \times \text{୧୦୦} = \text{୨\%}$$ ।

ଅର୍ଥାତ୍, କୌଣସି ଏକ ସହରର ପ୍ରାଧାନ୍ୟ $= \dfrac{\text{ନିର୍ଦ୍ଦିଷ୍ଟ ସହରର ଶ୍ରମିକଙ୍କ ସଂଖ୍ୟା}}{\text{ମୋଟ ଶ୍ରମିକଙ୍କ ସଂଖ୍ୟା}} \times \text{୧୦୦}$

ଏହିପରି ଭାବେ ବିଭିନ୍ନ ସହରର ପ୍ରାଧାନ୍ୟ (**Weightage**) ନିରୂପଣ କରାଯାଏ । ପ୍ରତ୍ୟେକଟି କେନ୍ଦ୍ରର ନିର୍ଦ୍ଦିଷ୍ଟ ମାସର ମୂଲ୍ୟସୂଚୀ ସହ ତାହାର ପ୍ରାଧାନ୍ୟକୁ ଗୁଣି ସେ ସମସ୍ତର ସମଷ୍ଟିକୁ ୧୦୦ ଦ୍ୱାରା ଭାଗକରି ସେହି ମାସର ସର୍ବଭାରତୀୟ ଖାଉଟି ମୂଲ୍ୟସୂଚୀ ନିରୂପଣ କରାଯାଏ । ଏହିପରି ଭାବେ ୧୨ ମାସର ମୂଲ୍ୟସୂଚୀର ହାରାହାରି ବାହାର କରି ବାର୍ଷିକ ମୂଲ୍ୟସୂଚୀ ନିର୍ଣ୍ଣୟ କରାଯାଏ ।

ଖାଉଟୀ ମୂଲ୍ୟସୂଚୀକୁ ଜୀବନଧାରଣ ମାନର ସୂଚୀ ବୋଲି କେତେକ କହିଥାନ୍ତି । କିନ୍ତୁ ଦୁଇଟିଯାକ ଅଲଗା କଥା । ଖାଉଟୀ ମୂଲ୍ୟସୂଚୀ ମଧ୍ୟଦେଇ ବିଭିନ୍ନ ଜିନିଷର ମୂଲ୍ୟରେ ଯେଉଁ ପରିବର୍ତ୍ତନ ଘଟେ ତାହା ପ୍ରତିଫଳିତ ହୋଇଥାଏ । କିନ୍ତୁ ଜୀବନଧାରଣମାନର ସୂଚୀରେ ଦ୍ରବ୍ୟମୂଲ୍ୟ ପରିବର୍ତ୍ତନ ସହ ଆୟ, ବ୍ୟବହାର କରାଯାଉଥିବା ଦ୍ରବ୍ୟ ଗୁଡ଼ିକର ସ୍ୱାଦ, ମାନ ଏବଂ ପରିମାଣ ଆଦିର ସମ୍ପର୍କ ଥାଏ । ଖାଉଟୀ ମୂଲ୍ୟସୂଚୀ ମଧ୍ୟଦେଇ ସମାନଧରଣର ଜୀବନଧାରଣ ମାନ ପାଇଁ ଦ୍ରବ୍ୟ ମୂଲ୍ୟ ପରିବର୍ତ୍ତନ ଜଣାପଡ଼ିଥାଏ ।

ତେଣୁ ଶ୍ରମିକମାନଙ୍କ ପକ୍ଷେ ଖାଉଟୀ ମୂଲ୍ୟସୂଚୀ ନିର୍ଦ୍ଧାରଣ ପଦ୍ଧତି ସମ୍ପର୍କରେ ଆବଶ୍ୟକୀୟ ଜ୍ଞାନ ଅର୍ଜନ କରିବା ଆଦୌ ଅସମ୍ଭବ କଥା ନୁହେଁ । ବରଂ ନିଜ ଜୀବନର ବାସ୍ତବ ଅଭିଜ୍ଞତା ମଧ୍ୟଦେଇ ସେମାନଙ୍କର ଏହାକୁ ବୁଝିବାର ପଥ ସୁଗମ ହୋଇଥାଏ । ସେମାନେ ଏହି ଜ୍ଞାନ ହାସଲ କରିପାରିଲେ ମୂଲ୍ୟସୂଚୀ ନିର୍ଦ୍ଧାରଣରେ ସରକାର ଯେଉଁ ମାରପେଞ୍ଚ ନୀତି ଗ୍ରହଣ କରୁଛନ୍ତି ତାର ସଫଳ ମୁକାବିଲା କରିପାରିବେ ।



